

**ଶ୍ରୀ ଦୁର୍ଗା ଚରଣ ନାୟକ**

ଅବସର ପ୍ରାପ୍ତ ଉପ ଶାସନ ସଚିବ

ଓଡ଼ିଶା ସରକାର

ଜନ୍ମ : ୪.୧୦.୧୯୩୮

ଦୁର୍ଗା ଅଷ୍ଟମୀ

କର୍ମଚାରୀ ଆନ୍ଦୋଳନ କ୍ଷେତ୍ରରେ ଶ୍ରୀ ଦୁର୍ଗା ଚରଣ ନାୟକ ଏକ ପରିଚିତ ନାମ । ଟ୍ରେଡ୍ ଇଉନିୟନ୍ ସମ୍ପର୍କୀୟ ଶତାଧିକ ରଚନା ତାଙ୍କର ପ୍ରକାଶ ପାଇଛି । ୧୯୯୮ ମସିହାରେ ସଂସ୍କୃତ ନାଟକ 'ମୃଚ୍ଛକଟିକମ୍'ର ଓଡ଼ିଆ ଅନୁବାଦ 'ମାଟି ଶଗଡ଼' ପ୍ରକାଶ ପାଇ ବିଭିନ୍ନ ପତ୍ରପତ୍ରିକାରେ ତଥା ସୁଧୀ ପାଠକମାନଙ୍କ ଠାରୁ ଉଚ୍ଚ ପ୍ରଶଂସା ଲାଭ କରିଛି । ତାଙ୍କର ଅନ୍ୟ ଏକ ଅନୂଦିତ ସଂସ୍କୃତ ନାଟକ 'ମୁଦ୍ରାରାକ୍ଷସ' ପ୍ରକାଶ ଅପେକ୍ଷାରେ । ସମ୍ପ୍ରତି ପ୍ରକାଶିତ 'ଆମ ଗାଁ ଆମ ମଞ୍ଚ' ଗ୍ରାମ୍ୟ ସଂସ୍କୃତିର ଏକ ଚମତ୍କାର ଆଲେଖ୍ୟ ।

- ପ୍ରକାଶିକା -

# ଆମ ଗାଁ ଆମ ମଞ୍ଚ

ରଚନା
ଶ୍ରୀ ଦୁର୍ଗା ଚରଣ ନାୟକ
ବିଳାସ ନିବାସ, ପ୍ଲଟ ନଂ- ୧୨୯୪/୧୪
ନୂଆପଲ୍ଲୀ, ଭୁବନେଶ୍ୱର-୭୫୧୦୧୨
ଦୂରଭାଷ- (୦୬୭୪) ୨୫୬୦୨୭୩

ପ୍ରକାଶିକା
ଶ୍ରୀମତୀ ବିଳାସ କୁମାରୀ ନାୟକ
ବିଳାସ ନିବାସ, ପ୍ଲଟ ନଂ- ୧୨୯୪/୧୪
ନୂଆପଲ୍ଲୀ, ଭୁବନେଶ୍ୱର-୭୫୧୦୧୨

ପ୍ରଚ୍ଛଦପଟ ଅଙ୍କନ
ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି

ପ୍ରଥମ ପ୍ରକାଶ
ଅଗଷ୍ଟ ୨୦୦୩

ମୁଦ୍ରଣ
ଶୋଭନ, ୧୦୬, ଆଚାର୍ଯ୍ୟ ବିହାର,
ଭୁବନେଶ୍ୱର-୭୫୧୦୧୩

# Amagan Amamancha

*Written by*
Sri Durga Charan Nayak
Bilasnivas, Plot No.1294/14,
Nayapalli, Bhubaneswar-751012
Phone : (0674) 2560273

*Published by*
**Smt. Bilas Kumari Nayak**
Bilasnivas, Plot No.1294/14,
Nayapalli, Bhubaneswar-751012

*Cover Design by*
Sri Ramesh Chandra Mohanty

*First Edition*
August 2003

*Printing*
SOVAN, 106, Acharya Vihar,
Bhubaneswar-751013

---

**ସହାୟକ ଗ୍ରନ୍ଥ**

ଓଡ଼ିଆ ନାଟକର ଉଦ୍ଭବ ଓ ବିକାଶ
*ଡକ୍ଟର ରତ୍ନାକର ଚଇନି*

ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶ ଧାରା
*ଡକ୍ଟର ହେମନ୍ତ କୁମାର ଦାସ*

ପ୍ରାପ୍ତିସ୍ଥାନ

୧. **ଗ୍ରନ୍ଥାଳୟ**
ମାର୍କେଟ ବିଲଡିଂ, ଭୁବନେଶ୍ୱର-୯
ଦୂରଭାଷ- ୨୫୩୦୩୯୬

୨. **ବୋଧି ପୁସ୍ତକାଳୟ**
ରୁମ୍ ନଂ-୦୧-୨୧,
ପ୍ରିୟଦର୍ଶିନୀ ମାର୍କେଟ,
ପି.ଆର୍.ପି. ସ୍କୋୟାର,
ଭୁବନେଶ୍ୱର-୧୨
ଦୂରଭାଷ-୨୫୬୧୮୦୯

ମୂଲ୍ୟ : ଟ୭୦.୦୦

ଆମର ଆଦରର ନାତୁଣୀ
ଅନସୂୟା ମନସ୍ୱିନୀ (ଲୁସୀ)
ନାତି ଋତାୟନ (ଋତ୍ୱିକ) ଓ
ଅମ୍ଳାନ ଅଭିଜ୍ଞାନ (ଲିମୁନ୍)ଙ୍କ
ଟିକି ଟିକି ହାତରେ ଏ ବହିଟି
ଟେକି ଦେଲୁ ।

-ଲେଖକ

-ପ୍ରକାଶିକା

# ଅଭିମତ

ଶ୍ରୀମାନ୍ ଦୁର୍ଗା ଚରଣ ମୋର ସାନ ଭାଇ ଏବଂ ଅତି ଆପଣାର ମଧ୍ୟ। ଜଣେ ପ୍ରଖର ବୁଦ୍ଧିଦୀପ୍ତ ଛାତ୍ର ଭାବରେ ସେ ମୋର ଶ୍ରଦ୍ଧାର ପାତ୍ର ଥିଲେ। ପଲ୍ଲୀ ଗ୍ରାମର ସାଧାରଣ ବିଦ୍ୟାଳୟରୁ ଶିକ୍ଷା ଲାଭ କରି ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେବା ପରେ ସେ ସରକାରୀ ଚାକିରିରେ କର୍ମମୟ ଜୀବନ ଆରମ୍ଭ କରିଥିଲେ। ଏକ ଦିଗରେ ସରକାରୀ ଚାକିରିର ଗୁରୁ ଦାୟିତ୍ୱ ଓ ଅନ୍ୟ ପକ୍ଷରେ ଅନ୍ତର୍ନିହିତ ସୃଜନୀ ଶକ୍ତିର ପରିପ୍ରକାଶ ପାଇଁ ସେ ବେଶ୍ କିଛିକାଳ ସଂଘର୍ଷରତ ଥିଲେ। ସରକାରୀ କାର୍ଯ୍ୟ ମଧ୍ୟରେ ତାଙ୍କ ପ୍ରତିଭା ସୀମିତ ହୋଇ ରହି ପାରିଲା ନାହିଁ। ଟ୍ରେଡ୍ ଇଉନିଅନ୍ ସଂପର୍କିତ ବହୁ ରଚନା ମାଧ୍ୟମରେ ତାଙ୍କର ଅନ୍ତର୍ନିହିତ ସାରସ୍ୱତ ପ୍ରତିଭା ଆତ୍ମପ୍ରକାଶ କରିବାକୁ ଆରମ୍ଭ କଲା।

ଅବସର ଗ୍ରହଣ ପରେ ସେ ନିଜକୁ ଜଣେ ସଂପୂର୍ଣ୍ଣ ଦାୟିତ୍ୱମୁକ୍ତ ସ୍ୱାଧୀନ ବ୍ୟକ୍ତି ରୂପେ ମନ ଗହନର କଳ୍ପନାକୁ ବାସ୍ତବ ରୂପ ଦେବା ପାଇଁ ଅକ୍ଳାନ୍ତ ପରିଶ୍ରମ କରିବାରେ ଲାଗି ପଡ଼ିଲେ। ତାହାର ଫଳଶ୍ରୁତି ଭାବେ ଅତି ସୁନ୍ଦର, ସାବଲୀଳ ପ୍ରକାଶ ଭଙ୍ଗୀ ସହିତ ଆତ୍ମପ୍ରକାଶ କଲା ମହାକବି ଶୂଦ୍ରକଙ୍କ ରଚିତ ସଂସ୍କୃତ ନାଟକ ମୃଚ୍ଛକଟିକମ୍‌ର ଓଡ଼ିଆ ଅନୁବାଦ 'ମାଟି ଶଗଡ଼'। ଏହା ଶ୍ରୀମାନ୍ ଦୁର୍ଗାଚରଣଙ୍କ ସାରସ୍ୱତ ସାଧନାର ଏକ ମହନୀୟ ଅବଦାନ। ଏହି ପୁସ୍ତକର ପ୍ରାକ୍‌କଥନର ଛତ୍ରେ ଛତ୍ରେ ଲେଖକଙ୍କର କଳା ନୈପୁଣ୍ୟର ମଧୁର ମଂଜୀର ଧ୍ୱନି ଅନୁରଣିତ ହୋଇ ଉଠିଛି। ଦୀର୍ଘ ୫୨ ପୃଷ୍ଠାର ଅବତରଣିକା ତାଙ୍କ ପ୍ରତିଭାର ସ୍ପଷ୍ଟ ସ୍ୱାକ୍ଷର ବହନ କରେ। ସରଳ ଓ ସାବଲୀଳ ଅନୁବାଦ ସହିତ ତତ୍‌କାଳୀନ ସାମାଜିକ ସ୍ଥିତି, ଧାର୍ମିକ ଅନୁଷ୍ଠାନ, ବିଚାର ବ୍ୟବସ୍ଥା ଏବଂ ପ୍ରେମ ଓ ପ୍ରଣୟର ସ୍ୱର୍ଗୀୟ ଅନୁଭବ ପାଇଁ ସମସ୍ତ ପ୍ରତିବନ୍ଧକୁ ଅତିକ୍ରମ କରିବାର ସାହସ ଆଦିକୁ ଲେଖକ ତାଙ୍କ ବଳିଷ୍ଠ ବର୍ଣ୍ଣନା ମାଧ୍ୟମରେ ଜୀବନ୍ତ କରି ପାରିଛନ୍ତି। ଚରିତ୍ର ଚିତ୍ରଣରେ ଲେଖକଙ୍କର ରହିଛି ଗଭୀର ଅନ୍ତର୍ଦୃଷ୍ଟି।

ପ୍ରଜ୍ଞାକୁ ପରିଚିତ କରିବାକୁ ଯାଇ ପଣ୍ଡିତମାନେ କହିଛନ୍ତି- ପ୍ରଜ୍ଞା ନବ ନବ ଉନ୍ମେଷ ଶାଳିନୀ। ଶ୍ରୀମାନ୍ ଦୁର୍ଗା ଚରଣଙ୍କ ପ୍ରଜ୍ଞା ସୃଷ୍ଟି କଲା ଏକ ଅନବଦ୍ୟ ସାରସ୍ୱତ ସମ୍ଭାର 'ମୁଦ୍ରା ରାକ୍ଷସ' ପରି ଏକ ବହୁ ଚର୍ଚ୍ଚିତ ସଂସ୍କୃତ ନାଟକର ଓଡ଼ିଆ ଅନୁବାଦ। ଏହି ଅନୁବାଦ ମାଧ୍ୟମରେ ଦୁର୍ଗା ଚରଣ ଏକ ଅନୁପମ ଅବଦାନ ଦେଇ ଉତ୍କଳ ଜନନୀର ସାରସ୍ୱତ ଭଣ୍ଡାରକୁ ଋଦ୍ଧିମନ୍ତ କରିବାରେ ସଫଳକାମ ହେବେ ଏଥିରେ ସନ୍ଦେହ ନାହିଁ।

ସଂପ୍ରତି ଅନୁବାଦ ସାହିତ୍ୟକୁ ପଛକୁ ରଖି, ସେ 'ଆମ ଗାଁ ଆମ ମଂଚ' ନାମକ ଏକ ପୁସ୍ତକର ପାଣ୍ଡୁଲିପି ରଚନା କରିଛନ୍ତି। ପାଣ୍ଡୁଲିପିଟି ପାଠ କରିବା ପୂର୍ବରୁ ମୋର ଆଶଙ୍କା ଥିଲା କୌଣସି ଏକ ଐତିହାସିକ ଦସ୍ତାବିଜ ଭଳି ଏହା ଗୁରୁତ୍ୱପୂର୍ଣ୍ଣ ହୋଇପାରେ କିନ୍ତୁ ନୀରସ ଓ ନିଷ୍ପ୍ରାଣ ହୋଇଥିବ କିନ୍ତୁ ପାଣ୍ଡୁଲିପିଟି ଆମୂଳାନ୍ତ ପାଠ କରି ଦେଖିଲି ଆମ ଗାଁ

ଆମ ମଂଚକୁ ଉପଜୀବ୍ୟ କରି ଶ୍ରଦ୍ଧେୟ ଦୁର୍ଗାଚରଣ ତାଙ୍କର ସରଳ ସାବଲୀଳ ପ୍ରକାଶ ଭଂଗୀ ମାଧ୍ୟମରେ ରଚନାଟିକୁ ସଂପୂର୍ଣ୍ଣ ରସୋତ୍ତୀର୍ଣ୍ଣ କରି ପାରିଛନ୍ତି। ଦୀର୍ଘ ଅତୀତର ଅନୁ-ସ୍ମରଣରେ ବହୁ ଲୁପ୍ତପ୍ରାୟ ଅମୂଲ୍ୟ ସ୍ମୃତି ଗୁଡ଼ିକ ସଂଗ୍ରହ କରି ସେ ଯେଉଁ ସୁନ୍ଦର ମାଳାଟିଏ ପ୍ରସ୍ତୁତ କରିଛନ୍ତି ତାହା କେବଳ ମଂଚ କାହାଣୀ ନୁହେଁ ବରଂ ଆମ ଗାଁର, ଆଖପାଖ ଗାଁର ବହୁ ପୁରାତନ, ସାମାଜିକ, ସାଂସ୍କୃତିକ ପରମ୍ପରା ସମ୍ବଳିତ ଏକ ବିରଳ ଆଲେଖ୍ୟ। ଶତଚେଷ୍ଟା ସତ୍ତ୍ୱେ ସେଇ ହଜିଲା ସଂସ୍କୃତିର ପୁନରୁଦ୍ଧାର ଅସମ୍ଭବ। କିନ୍ତୁ ସେଗୁଡ଼ିକ ଚିରଦିନ ପାଇଁ ନିଶ୍ଚିହ୍ନ ହେବା ପୂର୍ବରୁ ତାହାକୁ ଏହି ପୁସ୍ତକରେ ସ୍ଥାନିତ କରି ସାଂସ୍କୃତିକ ଇତିହାସରେ ଗୋଟିଏ ନୂତନ ପୃଷ୍ଠା ଯୋଗ କରିଛନ୍ତି ଶ୍ରଦ୍ଧେୟ ଦୁର୍ଗା ଚରଣ।

ପାରମ୍ପରିକ ପର୍ବ ପର୍ବାଣୀ ବର୍ଣ୍ଣନା କରିବା ଅବସରରେ ଆମ ଗାଁର ଗୋପାଳ ମାନଙ୍କର ପ୍ରଧାନ ପର୍ବ ଦୋଳ ପୂର୍ଣ୍ଣିମାରେ ଅନୁଷ୍ଠିତ ପାଣିତୋଳା ଏବଂ ସେଥିପାଇଁ କଳ୍ପିତ ଯମୁନା ନଦୀରୁ ଜଳ ଆନୟନ ପାଇଁ ସାମୂହିକ, ସୁସଜ୍ଜିତ ଯାତ୍ରା ଓ ତା ସହିତ ମନଫୁଲାଣିଆ ସଂଗୀତର ମଧୁର ମୂର୍ଚ୍ଛନା ଲେଖକଙ୍କୁ ଆତ୍ମହରା କରିଛି।

ଶୁଭେ ଶଙ୍ଖ ଧ୍ୱନି ଫିଟେ କବାଟ
ଗଲେ ଗୋପବାଳୀ ମଥୁରା ଘାଟ
କାହିଁ ପାଇଁ କାହ୍ନୁ ଓଗାଳୁ ବାଟ
କଂସ ରାଇଜରେ କେ ଦେବ ଘାଟ
ଖଳ ଶାଶୁ ମୋର ଖଳ ନଣନ୍ଦ
କ୍ଷଣେ ନ ଦେଖିଲେ କରିବେ ଦ୍ୱନ୍ଦ

ସୁନ୍ଦର ସରଳ ଚିତ୍ତାକର୍ଷକ ଅଭିବ୍ୟକ୍ତି ! ବାସ୍ତବରେ ଏହି ଯାତ୍ରା ଦର୍ଶକ ପ୍ରାଣରେ ଅନିର୍ବଚନୀୟ ଭାବାବେଗ ସୃଷ୍ଟି କରିଥାଏ। କେତେକ ସ୍ଥାନରେ ଏହି ପାଣିତୋଳା ଗୋପାଙ୍ଗନା (ଗୋପାଳୁଣୀ) ମାନଙ୍କ ଦ୍ୱାରା ସମାହିତ ହେଉଥିଲା। ସେ ପରମ୍ପରା ଆଉ ନାହିଁ। ଦୋଳ ପର୍ବ ରାଧାକୃଷ୍ଣ ଓ ଗୋପାଙ୍ଗନା ମାନଙ୍କ ପ୍ରେମ ଓ ମିଳନର ମଧୁର ମୂର୍ଚ୍ଛନାରେ ପୁଲକିତ ପର୍ବ। ଏଥିରେ ଆନନ୍ଦ ହିଁ ଆନନ୍ଦ। କିଛି ସମୟ ସମସ୍ତେ ସବୁକିଛି ଭୁଲିଯାଇ ପ୍ରେମ ସାଗରରେ ବୁଡ଼ି ରହିଥାନ୍ତି।

ଏହି ସମୟରେ ଗୋପାଳ ସଂପ୍ରଦାୟର ଯୁବକ ଏପରିକି ପ୍ରୌଢ଼ମାନେ ମଧ୍ୟ ଲଉଡ଼ି ଖେଳ ଖେଳିଥାନ୍ତି। ଏଥିରେ ରାଧାକୃଷ୍ଣ କିମ୍ବା ଗୋପାଙ୍ଗନା ମାନଙ୍କର ଆଦୌ ସଂପର୍କ ନଥାଏ। ଏହା ସାମରିକ ଅଭ୍ୟାସର ଏକ ପ୍ରତୀକ। ଓଡ଼ିଆ ପାଇକ ସମର ଅଭ୍ୟାସବେଳେ ବାଉଁଶ ବାଡ଼ି (ଲାଠି) ସାହାଯ୍ୟରେ ଶତ୍ରୁକୁ ଆକ୍ରମଣ କରିବା ଶିକ୍ଷା କରିଥାନ୍ତି। ଏହି ଲଉଡ଼ି ଖେଳରେ ଯେଉଁ ପ୍ରକାର ଆକ୍ରମଣ, ପ୍ରତି ଆକ୍ରମଣ ଓ ଆତ୍ମରକ୍ଷାର କୌଶଳ ନିହିତ ତାହା ଏକ ସଂପୂର୍ଣ୍ଣ ସମରକ୍ରୀଡ଼ା ବୋଲି ନିର୍ବିବାଦରେ କୁହାଯାଇ ପାରେ। ବହୁ ଅନୁସନ୍ଧାନ ପରେ ସୁଆବରେଇର ଯଦୁମଣି କୋଦମା ସିଂଙ୍କ ଠାରୁ ଶୁଣିଥିଲି ଆଗେ ଉତ୍କଳରେ ଜାତି

ନିର୍ବିଶେଷରେ ସମସ୍ତେ ଥିଲେ ପାଇକ ଓ ଦୈନିକ ସମର ଅଭ୍ୟାସ କରୁଥିଲେ। ଗୋପାଳ ପାଇକମାନେ ଲମ୍ବ ସରୁ ବାଉଁଶ ବାଡ଼ି (ପାଞ୍ଚଣ) ସାହାଯ୍ୟରେ ପିଲାମାନଙ୍କୁ ସମର କୌଶଳ ଶିକ୍ଷା ଦେଉଥିଲେ। ଦଶହରା ପର୍ବରେ ଖଣ୍ଡା, ବର୍ଚ୍ଛା, ଡାଲ ଆଦି ବ୍ୟବହାର କରି ପାଇକ ଆଖଡ଼ା ହୁଏ। ମାତ୍ର ଗୋପାଳମାନେ ଏହି ଅନୁଷ୍ଠାନକୁ ସେମାନଙ୍କର ପ୍ରଧାନ ପର୍ବ ଦୋଳ ପୂର୍ଣ୍ଣିମା ସହିତ ଯୋଡ଼ି ଦେଇଥିଲେ। ଲଉଡ଼ି ଖେଳରେ ବ୍ୟବହୃତ 'ବୋଲି' ସଂକେତଧର୍ମୀ ମାତ୍ର ବୀରତ୍ୱ ବ୍ୟଞ୍ଜକ ଓ ଉତ୍ତେଜକ।

ଅନ୍ୟାନ୍ୟ ସାଂସ୍କୃତିକ ପରମ୍ପରା ମଧ୍ୟରେ ରହିଛି ଗାଁର କଳଘୋଡ଼ା ନାଚ, ସଖୀ ନାଚ, ଧୁଡୁକି ନାଚ୍, ପାଲା ପାଖ ଗାଁର ନାଗା ନାଚ୍ ଆଦି। ଏ ସମସ୍ତ ସାଂସ୍କୃତିକ ଧାରାର ବର୍ଣ୍ଣନାରେ ସମୁଦାୟ ରଚନାଟି ଋଦ୍ଧିମନ୍ତ ହୋଇଛି।

ଆମ ବିସ୍ମୃତ ଅତୀତକୁ ଟେକି ଧରି ଶ୍ରୀମାନ୍ ଦୁର୍ଗାଚରଣ ଏକ ମହାନ୍ କର୍ତ୍ତବ୍ୟ ସଂପାଦନ ପୂର୍ବକ ଆମକୁ, ଆମ ଗାଁକୁ, ଆମ ପଡ଼ିଶା ଗାଁକୁ ଏବଂ ସର୍ବୋପରି ଆମର ଅତିପ୍ରିୟ ଜନ୍ମମାଟିକୁ ଗୌରବ ବିଭୂଷିତ କରି ପାରିଛନ୍ତି। ସରଳ ପଲ୍ଲୀ ପ୍ରାଣର ଛଳ ଛଳ କଳ କଳ ଜୀବନ ପ୍ରବାହର ଆଲେଖ୍ୟ ପୁସ୍ତକଟିକୁ ରସୋତ୍ତୀର୍ଣ୍ଣ କରିପାରିଛି। ପୁଣି ଥରେ କହୁଛି କାଳ ଗର୍ଭିତ ଆମ ପଲ୍ଲୀ ପ୍ରାଣର ସାଂସ୍କୃତିକ ପରିଚିତିକୁ ଲୋକ ଲୋଚନକୁ ଆଣିବାର ପ୍ରଚେଷ୍ଟା ପାଠକ ପ୍ରାଣରେ ହଜିଲା ଦିନର ସ୍ମୃତିକୁ ଆପେ ଆପେ ଉଜ୍ଜୀବିତ କରିଥାଏ।

ଆମ ଗାଁରେ ମଂଚ୍‌ର କ୍ରମ ବିକାଶ ସଂପର୍କରେ ସେ ଯାହା କହିଛନ୍ତି ତା ପୂର୍ବରୁ ଅନେକ ବିବରଣୀ ରହି ଯାଇଛି। ସର୍ବ ପ୍ରଥମେ ବସନ୍ତ ରାସ, ମାନ ଭଂଜନ, ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତିଙ୍କ ବିଭିନ୍ନ ଗୀତାଭିନୟ ମଂଚସ୍ଥ ହୋଇଥିଲା। ସେତେବେଳକୁ ଦୁର୍ଗା ଚରଣ ଶିଶୁ। ସେଇ ଭିତ୍ତିଭୂମି ଉପରେ ସମୟର ଆହ୍ୱାନକୁ ଗ୍ରହଣ କରି ମଂଚର ଆଧୁନିକୀକରଣରେ, ଜୀବନଧର୍ମୀ ନାଟକ ମଂଚସ୍ଥ କରିବାରେ ଏବଂ ଯୁବ ସଂପ୍ରଦାୟକୁ ଅନୁପ୍ରେରିତ କରିବା ଦିଗରେ ତାଙ୍କର ଉଦ୍ୟମ ପ୍ରଶଂସନୀୟ। ଏହିସବୁ ଅଭିନୟ ବ୍ୟପଦେଶରେ ଲେଖକ ଏକ ବିସ୍ତୃତ ଅଂଚଳରେ ଆମ ଗାଁକୁ ମର୍ଯ୍ୟାଦାବନ୍ତ କରିବା ଏକ ଉଲ୍ଲେଖନୀୟ କାର୍ଯ୍ୟ।

ଶ୍ରୀମାନ୍ ଦୁର୍ଗା ଚରଣଙ୍କ ସାରସ୍ୱତ ସାଧନା ଉତ୍ତରୋତ୍ତର ଅଗ୍ରଗତି କରୁ, ତାଙ୍କ ଲେଖନୀ ସଦା ଚଞ୍ଚଳ ରହି ନୂଆ ନୂଆ ପରିକଳ୍ପନାକୁ ରୂପାୟିତ କରୁ-ସେ ସୁଦୀର୍ଘ ନିରାମୟ ଜୀବନ ଯାପନ କରି ଅମୂଲ୍ୟ ସାରସ୍ୱତ ସାଧନାରେ ନିମଗ୍ନ ରହନ୍ତୁ- ଏହାହିଁ ମା ଭବାନୀଙ୍କ ଚରଣରେ ପ୍ରାର୍ଥନା।

- ଜୟହିନ୍ଦ୍ -

ଗୋବିନ୍ଦପୁର

ରଜ ୨୦୦୩

**କାଶୀନାଥ ନାୟକ**

# ଲଘୁପତନକ ଉବାଚ

ପବନର ଗୋଟିଏ ଫୁତ୍‌କାରରେ ସବୁ ନିଶ୍ଚିହ୍ନ ହୋଇଗଲା ପରି ମୋ ଆଖି ଆଗରେ ଗୋଟିଏ ସାଂସ୍କୃତିକ ବିପର୍ଯ୍ୟୟ ଘଟିଗଲା। ମୁଁ କେବେ କଳ୍ପନା କରି ନଥିଲି ଓଡ଼ିଆ ନାଟକ ବହିଖଣ୍ଡେ ଉତ୍ତର ପୁରୁଷ ଖୋଜି ପାଇବେ ନାହିଁ, ଓଡ଼ିଆ ରଂଗମଂଚ ଇତିହାସ ପାଲଟିଯିବ। ରୁଚିବୋଧରେ ପରିବର୍ତ୍ତନ ଘଟିଥିଲେ ଏ ବିପର୍ଯ୍ୟୟର କାରଣ ବୁଝି ହୋଇଥାନ୍ତା କିନ୍ତୁ ଏବେ ବି ଯାତ୍ରାକୁ ଲୋକଙ୍କର ସୁଅ ଛୁଟିଛି-କାନ୍ଦୁରା ପିଲାକୁ କୋଳରୁ ଫୋପାଡ଼ି ମା ଟିଭି ସିରିଅଲ ଦେଖୁଛି। ସେଇ ପ୍ରେମ କାହାଣୀ, ନହେଲେ ପାରିବାରିକ ଦ୍ୱନ୍ଦର କାହାଣୀ। ସମାଜବିଜ୍ଞାନୀ ମାନେ ଏହାର କାରଣ ନିର୍ଦ୍ଧାରଣ କରିବେ କିନ୍ତୁ ଷାଠିଏ ବର୍ଷ ଭିତରେ ସାଂସ୍କୃତିକ ଜୀବନ ଧାରାରେ ଯେଉଁ ବ୍ୟାପକ ପରିବର୍ତ୍ତନ ଘଟିଯାଇଛି ତାର କ୍ଷୀଣ ସଙ୍କେତ ଏ ପୁସ୍ତକରୁ ମିଳିପାରିବ।

ଓଡ଼ିଶାର ରଂଗ ମଂଚର ପୂର୍ଣ୍ଣାଙ୍ଗ ଇତିହାସ ଏ ପର୍ଯ୍ୟନ୍ତ ଲେଖା ହୋଇ ନାହିଁ। ଗାଁ ଗହଳିରେ ଗଡ଼ି ଉଠିଥିବା ଶତାଧିକ ରଂଗ ମଂଚକୁ ବାଦ୍ ଦେଇ ପୂର୍ଣ୍ଣାଙ୍ଗ ଇତିହାସ ସଂକଳନ ସମ୍ଭବ ନୁହେଁ। ଏଇ ଅବହେଳିତ ରଂଗ ମଂଚ ଗୁଡ଼ିକ ଓଡ଼ିଆ ନାଟକକୁ ଲୋକପ୍ରିୟ ଓ ସାର୍ବଜନୀନ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ସେଇଭଳି ଗୋଟିଏ ରଂଗ ମଂଚର ଦୀର୍ଘ ୬୬ ବର୍ଷର (୧୯୩୩ରୁ ୧୯୯୮) ଇତିବୃତ୍ତ ଉପସ୍ଥାପିତ କରିଛି। ରଂଗ ମଂଚର ପୂର୍ଣ୍ଣାଙ୍ଗ ଇତିହାସ ସଂକଳନ କ୍ଷେତ୍ରରେ ଏହା ଗୁଣ୍ଡୁଚି ମୂଷାର କାର୍ଯ୍ୟ କରିବ।

ଏଥିରେ ସନ୍ନିବେଶିତ କେତୋଟି ନାଟକର ବିଷୟବସ୍ତୁରୁ ନାଟକର ଆଙ୍ଗିକ ପରିବର୍ତ୍ତନ ଏବଂ ସାମାଜିକ ପ୍ରାସଙ୍ଗିକତା ସଂପର୍କରେ ସୂଚନା ମିଳିବ। ଏଥିରୁ ହୁଏତ ମଂଚ ନାଟକର ବିପର୍ଯ୍ୟୟ ସଂପର୍କରେ କିଛି ସନ୍ଧାନ ମିଳି ପାରିବ।

ମୋର ଆବାଲ୍ୟ ବଂଧୁ ଶ୍ରୀ ରଘୁନାଥ ବରାଳ (ଆଗୁଁହା) ଶ୍ରୀ ଶୁକଦେବ ନାୟକ (ଦୋହଡ଼ା) ଏବଂ ଆୟୁଷ୍ମାନ ପ୍ରେମାନନ୍ଦ ପ୍ରଧାନ (ମାଟିଆପଡ଼ା)ଙ୍କ ପରୋକ୍ଷ ପ୍ରେରଣାରେ ଯେତେବେଳେ ଏ ପୁସ୍ତକଟି ରଚନା କଲି ସେତେବେଳେ ମୋର ସ୍ମୃତି ଉପରେ ନିର୍ଭର କରିବା ଭିନ୍ନ ଅନ୍ୟ ପନ୍ଥା ନଥିଲା। ମୋର ପତ୍ନୀ

ଶ୍ରୀମତୀ ବିଳାସ କୁମାରୀ ନାୟକ ମୋର ଅଧାପାଶୋରା ସ୍ମୃତିକୁ ଉଜ୍ଜୀବିତ କରି ଏ ପୁସ୍ତକ ରଚନା କ୍ଷେତ୍ରରେ ଉଲ୍ଲେଖନୀୟ ଯୋଗଦାନ ଦେଇଛନ୍ତି ।

ମୋର ବଂଧୁ ଶ୍ରୀ ପ୍ରଶାନ୍ତ କୁମାର ପଟ୍ଟନାୟକ (ଅବସରପ୍ରାପ୍ତ ଯୁଗ୍ମ ସଚିବ ବିଧି ବିଭାଗ) ବହୁ ପରିଶ୍ରମ କରି ଏହାକୁ ଋଦ୍ଧିମନ୍ତ କରିଛନ୍ତି। ପ୍ରତ୍ୟାଶାହୀନ ଏବଂ କ୍ଲାନ୍ତିହୀନ ସହାୟତା ତାଙ୍କର ଜୀବନ ଦର୍ଶନ । ମୋ ଭଳି ଅନେକ; ବେଳ ଅବେଳ, ସୁବିଧା ଅସୁବିଧା ନ ବୁଝି ତାଙ୍କ କାନ୍ଧରେ ଓହଳି ପଡ଼ୁ, ସେ ଆଗ୍ରହରେ ଉଠାଇ ନିଅନ୍ତି । ମୋର ବଂଧୁ ବିଶିଷ୍ଟ ଚିତ୍ରଶିଳ୍ପୀ ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି ଏହାର ପ୍ରଚ୍ଛଦପଟ ଅଙ୍କନ କରିଛନ୍ତି । ତୁଳୀ ମୁନରେ ରହିଛି ମୋ ପ୍ରତି ଶ୍ରଦ୍ଧାର ସ୍ପର୍ଶ ।

କାଶୀ ଭାଇ, ପ୍ରାଣ ଭାଇଙ୍କ ପ୍ରେରଣା ପୁଣି ରାମଚନ୍ଦ୍ର ଓ ସୂର୍ଯ୍ୟନାରାୟଣର ଆଗ୍ରହ ଭୁଲି ହେବ ନାହିଁ । କାଶୀ ଭାଇ ଏ ପୁସ୍ତକର ମୁଖବନ୍ଧ ଲେଖି ମୋତେ ଆଶୀର୍ବାଦ କରିଛନ୍ତି ।

ଇଚ୍ଛାକୃତ ଭାବେ ନୁହେଁ, ଅକସ୍ମାତ୍ ପାଣ୍ଡୁଲିପିଟି ଦୀପାବଳି ଦିନ ଶେଷ ହେଲା । ମୋର ପୂର୍ବଜ ମାନଙ୍କ ସ୍ମୃତି ଚାରଣ କରି ଗଙ୍ଗାରେ ଦୀପଦାନର ସୌଭାଗ୍ୟ ଲାଭ କଲି ।

ଯେଉଁମାନେ ମଂଚ ଉପରେ; ମଂଚ ଉହାଡ଼ରେ ଥାଇ ଅଗଣିତ ଦର୍ଶକଙ୍କୁ ସତ୍ୟ ଶିବ ସୁନ୍ଦରର ସନ୍ଧାନ ଦେଇଥିଲେ ଏହି ପୁସ୍ତକର ଶ୍ରେୟ ସେହିମାନଙ୍କର ପ୍ରାପ୍ୟ । ସେମାନେ ମୋର ନମସ୍ୟ । ଯେଉଁମାନେ ଦିନେ ଆମ ସହିତ ଥିଲେ, ନାଚୁଥିଲେ, ଗାଉଥିଲେ, ଅନ୍ତରାଳରେ ରହି ନଚାଉଥିଲେ, ନାଚିବା ପାଇଁ ବ୍ୟବସ୍ଥା କରୁଥିଲେ ଅଥଚ ଆଜି ଆର ପୁରରେ ସେମାନଙ୍କ ଅମର ସ୍ମୃତି ପ୍ରତି ମୋର ବିନମ୍ର ଶ୍ରଦ୍ଧାଞ୍ଜଳୀ ।

ଦୁର୍ଗା ଚରଣ ନାୟକ

**ମେ** ମାସ ଶେଷବେଳକୁ ରଜ ଆସୁଛି ବୋଲି ଆମ ଗାଁରେ ବାରି ହୋଇ ପଡ଼େ।

ଉଦ୍‌ଦୁଉଦିଆ ଦ୍ୱିପ୍ରହରେ ବିରହ ବିଧୁର କୋଇଲିଟି ଯେତେବେଳେ ଆବେଗଭରା କଣ୍ଠରେ କୁହୁତାନ ତୋଳି ମୈଥୁନ ସାଥିଟିଏ ଖୋଜୁଥାଏ- ଡାହିବଜା ଆମ୍ବ ଗୋଟିଏ ଗୋଟିଏ ଗହଳିଆ ପତ୍ର ଆଢୁଆଳରୁ ଭୂଇଁରେ ପଡ଼େ, ସେତେବେଳେ ଗୋପାଳ ମାମୁଁ ଆମ୍ବତୋଟା ଭିତରେ ମଶିଣା ଖଣ୍ଡେ ପକାଇ ପାର୍ଟ ଲେଖି ବସନ୍ତି।

ବିଳମ୍ବରେ ଶେଯ ଛାଡ଼ିଥିବା ନୂଆ ବୋହୂଟି ଧଡ଼୍ ପଡ଼୍ ହୋଇ ଆଡ଼ତି ଗୋଟାଇ ନେଲା ଭଳି ଗାଁଟି ଚଞ୍ଚଳ ହୋଇ ଉଠେ। ସଂଜ ନଇଁ ଆସିଲେ ଚୁଲୀରେ ହାଣ୍ଡି ବସେ। ସଅଳ ଖାଇଲେ ପିଲାଏ ରିହର୍ସଲକୁ ଯିବେ ଯେ !

ଭଗି ଭାଇ କାଠ ଡାବଲ ଭିତରୁ ହାରମୋନିଅମ୍ ବାହାର କରି ରିଡ୍ ଉପରେ ହାତ ଚଳାଇ ନିଅନ୍ତି ଏମୁଣ୍ଡରୁ ସେ ମୁଣ୍ଡ ଯାଏଁ। କାନ୍ଥରେ ଟଙ୍ଗା ହୋଇଥିବା ମୃଦଙ୍ଗ ବାହାର କରି ବିଶି ଦାଦି ଆଗ ଗୁଡାଏ ଅର୍ଦ୍ଧାଳୁଆ ପିଟି ଚାଲନ୍ତି। ତା'ପରେ ହାରମୋନିଅମ୍‌ରେ ସୁର ଧରନ୍ତି ଭଗିଭାଇ, ମୃଦଙ୍ଗରେ ଟିପା ଦିଅନ୍ତି ବିଶି ଦାଦି।

ତଳ ସାଇ ସ୍କୁଲ ଘରେ ନଡ଼ିଆଟିଏ ପିଟି ରିହର୍ସଲର ଶୁଭାରମ୍ଭ ହୁଏ ରାତି ଆଠଟା ପରିକି। ପୁରୁଖା ମାଇପେ ମୁହଁ ମୋଡ଼ନ୍ତି, କହନ୍ତି, "ଦିନ କେଇଟା ପରେ କଳି କଜିଆ କରି, ଭଙ୍ଗା ଭଙ୍ଗି କରି ଆସିବେ ନାହିଁ କି ?"

ସତକୁ ସତ ଦିନ କେଇଟା ଯାଇ ନଥିବ ଆରମ୍ଭ ହେବ ମୁହଁ ଫୁଲା ଫୁଲି। କିଏ ରିହର୍ସଲକୁ ଆସିବାରେ ଡେରି କଲାତ ଦିଅ ତା ନାଁରେ ହରିବୋଲ। ଚାଲ ଘରକୁ।

- 'କିଏ ଏବେ ଘରୁ ଖାଇ ଘୋଡ଼ା ଆଗରେ ଧାଇଁବ ଯେ !'

ଅମନଯୋଗୀ ଅଭିନେତାଟି ଚଟକଣାଟିଏ ଖାଇ ଆହତ ଅଭିମାନରେ ଯାଇଛି ଯେ ଯାଇଛି- ଆଉ ଆସୁ ନାହିଁ। ଦିଅ ତା ନାଁରେ ହରିବୋଲ।

- "ଏ କ'ଣ ଆମ ପୁଅ ବାହାଘର ହୋଇଛି କି ଯିବୁ ତାକୁ ଖୋସାମତ କରିବାକୁ ?"

ବିଷାଦ ଜର୍ଜରିତ ଅସ୍ପଷ୍ଟ ଆର୍ତ୍ତନାଦ ସ୍ୱରରେ ହରିବୋଲ ପଡ଼େ। ଝାପ୍‌ସା ଲଣ୍ଠନ ଆଲୁଅରେ ଟିକକ ଆଗର ସତେଜ ମୁହଁଟି ମାନ କାନ୍ଦୁରା ପିଲାର ମୁହଁ ଭଳି ଦିଶେ ବିବର୍ଣ୍ଣ, ବିଷଣ୍ଣ।

ଦିନେ ଦୁଇଦିନ ମୁହଁ ଶୁଖାଇ ସମସ୍ତେ ଘରେ ବସନ୍ତି। ଗୋପାଳ ମାମୁଁ ଲାଗି ପଡ଼ନ୍ତି ଯୋଡ଼ା ଯୋଡ଼ି କରିବା ପାଇଁ। କାହାକୁ ନେହୁରା ହୋଇ, କାହାର ହାତ ଓଠ

ଧରି ସମସ୍ତଙ୍କୁ ଏକାଠି କରନ୍ତି । ପୁଣି ସଂଜ ସଂଜ ଭଗିଭାଇଙ୍କ ପିଣ୍ଡାରୁ ମୃଦଙ୍ଗର ଟିପା ଶୁଭେ- ରାତି ଅଧଯାଏଁ ସ୍କୁଲ ଘରୁ କୋଳାହଳ ।

ନିର୍ଦ୍ଦେଶନା ଦିଅନ୍ତି ଭଗିଭାଇ । ମାଛକୁ ବଗ ଚାହିଁଲା ଭଳି ଗୋଟିଏ ଲୟରେ ଅଭିନୟ ଦେଖୁଥାନ୍ତି ଭ୍ରମର ଭାଇ । ତାଙ୍କ ମନକୁ ନ ପାଇଲେ ଚଟ୍ କରି ଉଠିଯାଇ ବତାଇ ଦିଅନ୍ତି । ସନ୍ତୋଷର ଢେଉ ଖେଳି ଯାଏ ସବୁରି ମୁହଁରେ ।

- 'ହଁ, ଏଇ ଠିକ୍ ହେଲା । ଏମିତି ହେବା କଥା ତ !'

ରଜ ଆଠ ଦିନ ଥିବ, ଗୀତ ରିହର୍ସଲ ହୁଏ ଦ୍ୱିପ୍ରହରେ । ଭଗିଭାଇ ହାରମୋନିଅମ୍ ଧରି ସ୍ୱର ସଂଯୋଜନା କରନ୍ତି । ଭ୍ରମର ଭାଇ ଗୀତଟିକୁ ମାଜି ଦିଅନ୍ତି, ମାଖି ଦିଅନ୍ତି । ଲମ୍ବା ଲମ୍ବା ପାହୁଣ୍ଡ ପକାଇ ଚାଲୁଥିବା ସଂଗୀତ କିଶୋରୀଟି ଅଣ୍ଟା ଭାଙ୍ଗି ଲୀଳାୟିତ ଭଂଗୀରେ ଚାଲେ । ସବୁରି ପସନ୍ଦ ହୁଏ ।

ବାପା (ଉଦୟ ନାଥ ନାୟକ) ଏବଂ ପିଇସା (ଭାଗବତ ମହାନ୍ତି)ଙ୍କୁ ସମସ୍ତେ ମାନନ୍ତି । ବାପା ଦଶ ନମ୍ବର ଇଉନିଅନର ପ୍ରେସିଡେଣ୍ଟ । ଆଧୁନିକ ଭାଷାରେ କହିଲେ ଅନରାରୀ ସରକାରୀ ରୁରାଲ ମାଜିଷ୍ଟ୍ରେଟ । ପିଇସା ନେଜୁବାବୁ ଜମିଦାରୀର ତହସିଲଦାର । ଜମିଦାରଙ୍କର ଚଳନ୍ତି ପ୍ରତିମା । ମଝିରେ ମଝିରେ ସେମାନେ ପିଲାମାନଙ୍କୁ ଉତ୍ସାହିତ କରିବା ପାଇଁ ରିହର୍ସଲ ଦେଖି ଆସନ୍ତି । ଘଡ଼ିଏ ଦି ଘଡ଼ି ତାଙ୍କ ସହିତ କଟାନ୍ତି ।

ବାହା ଝିଅମାନେ ଗାଁକୁ ଆସିବା ପାଇଁ ଗୋଡ଼ ଟେକି ବସନ୍ତି । ରଜ ଭଳି ପର୍ବ ! କେତେ ଜିନିଷ ସାଥିରେ ନେବାକୁ ହେବ । ଶାଶୂ ଘରର ତ ପୁଣି ଗୋଟିଏ ଆଧି ଅଛି । ପିଲାମାନେ କ'ଣ ସେତେବେଳକୁ କିଛି କରାଇ ଦେବେ ! ଏଣେ ଗୋଟାଏ କିନିଷ ଟ୍ରଙ୍କରେ ରଖିବା ବେଳକୁ ଆଉ ଗୋଟିଏ ଜିନିଷ ଚିଲ ଭଳି ଝାମ୍ପି ନେବେ । ଏବେଠାରୁ ଗୋଟିଏ ଗୋଟିଏ କିନିଷ ଯୋଗାଡ଼ କରି ଅଲଗା ନ ରଖିଲେ ଶେଷ ମୁହୂର୍ତ୍ତରେ ହଇରାଣ ହେବାକୁ ପଡ଼ିବ । ପୁଣି ଭଲ ଶାଢ଼ୀ ଖଣ୍ଡେ ଦି ଖଣ୍ଡ ନେବାକୁ ହେବ । ଥିଏଟର ବେଳେ ପାର୍ଟିଅର ମାନେ ପିନ୍ଧିବେ । ସମସ୍ତେ ଦେଖିବେ । କହିବେ, ଅମୁକ ନାନୀର ଶାଢ଼ୀ ଭଳି ଆଉ କାହାର ଅଛି ମ !

ମେଳନ ତୋଟା ପାଖକୁ ଲାଗି ବିସ୍ତୀର୍ଣ୍ଣ ପଡ଼ିଆ । ପାଞ୍ଚ ହଜାର ଲୋକ ବସିଲେ ଦେହକୁ ଦେହ ଲାଗିବ ନାହିଁ । କଣ୍ଟାବୁଦା ନାହିଁ, ଅରମା ବଣ ନାହିଁ ଖାଲି ସବୁଜ ସୁନ୍ଦର ଘାସର ବଗିଚା । ବର୍ଷାଦିନେ ନାଲି ଗୁଲୁ ଗୁଲୁ ସାଧବ ବୋହୂମାନେ ଏଇ କଅଁଳିଆ ଗହଳିଆ ଗାଲିଚା ଉପରେ ନାଲି ଓଢ଼ଣା ଟାଙ୍କି ଠୁକୁ ଠୁକୁ ହୋଇ ଦୌଡ଼ନ୍ତି । ନୂଆ ସର ଲାଗିଥିବା ବଣି ଚଢ଼ାଇ ମାନେ ମା' ଠାରୁ ଆଧାର ଖାଆନ୍ତି ।

ଯେଉଁ ଦିନୁ ଗାଁ ଦାଣ୍ଡରୁ ଚାଦରଟଣା, ଖଟପକା ଷ୍ଟେଜ୍ ଉଠିଛି ସେଇ ଦିନୁ ଏଠି ପେଣ୍ଡାଲ ତିଆରି ହୋଇଛି। ବିରାଟ ମାଟି ପେଣ୍ଡାଲ। ପାଖରେ ମାଟି ନନ୍ଦର କୂଅଟିଏ।

ରଜ ତିନିଦିନ ଆଗରୁ ଗହଳି ଆରମ୍ଭ ହୁଏ ଏଇ ଷ୍ଟେଜ୍ ପାଖରେ। ଗାଁରୁ ସମସ୍ତେ ଆସନ୍ତି। କିଏ ସାହାଯ୍ୟ କରିବାକୁ, କିଏ ଉତ୍ସାହିତ କରିବାକୁ। ଅବୋଧ୍ୟ କୋଳାହଳରେ ନିଷ୍ଣୁପ୍ତ ପଡ଼ିଆଟି ପଡ଼େ ଉଠେ। ଘର ଲେଉଟାଣି ବାଟୋଇଟି ଘଡ଼ିଏ ଅଟକି ଯାଏ। ରଜଭାର ନେଇ ଝିଅ କି ଭଉଣୀ ଘରକୁ ଯାଇଥିଲା ପରା। ଏବେ ଫେରୁଛି।

ବାଳକାଟି ଜୟି ମହାନ୍ତିଙ୍କ ଠାରୁ ଭଗି ଭାଇ ସିନ୍, ବେଶପୋଷାକ ଆଣନ୍ତି। ପଇସା ସେ ନିଅନ୍ତି ନାହିଁ। ଥିଏଟର ତାଙ୍କର ନିଶା। ଏଥି ପାଇଁ ବାପ ପୁଅରେ କଳି। ଯା ମୁହଁ ଏଣେ ହେଲେ ତା ମୁହଁ ତେଣେ। ସିନ୍‌ରେ ଲେଖାଥାଏ ଏସ୍.ସି ସରକାର। ପୁରା ନାଁ ସତୀଶ ଚନ୍ଦ୍ର ସରକାର। ହାଲୁକା ରଙ୍ଗର ସିନ୍ ସବୁ ଦୂରକୁ ଖୁବ୍ ସୁନ୍ଦର ଦିଶେ। ଡ୍ରପ୍ ସିନ୍‌ରେ ଲଳିତ ଭଂଗୀରେ ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତି।

ଛାମୁଣ୍ଡିଆ ବନ୍ଧା, ସିନ୍ ଟଣା ଦୁଇ ଦିନ ଲାଗେ। ଆଗରୁ ସିନ୍ ବାଉଁଶ, ସିନ୍ ଦଉଡ଼ି କାଠ ଖୁଣ୍ଟ ମହଜୁଦ୍ ଥାଏ। ଷ୍ଟେଜ୍ ଚାରିପଟେ ଘେର ଦେବାକୁ ଦିପଟିଆ ଚାଞ୍ଚ ବି ଥାଏ। ନଅଣ୍ଟ ହେଲେ ସଙ୍ଗେ ସଙ୍ଗେ ବୁଣାଯାଏ। ସବୁରି ବୁଦାରୁ ଗୋଟିଏ ଗୋଟିଏ ବାଉଁଶ ଚାନ୍ଦାରେ ଆସେ। ତା ବାଦ୍ ହାତପୁରା ଅଛି। ରିହର୍ସଲ ସରିଲେ ବହଳିଆ ଅନ୍ଧାର ରାତିରେ ହାତ ପୁରାଇ ଖଣ୍ଡେ ଅଧେ ବାଉଁଶ ଆଣିବାକୁ ପଡ଼େ। ଘରୁଆ ପକାଳେ ଜାଣେ। ହେଲେ ଅଭିଯୋଗ କରେନା। ଭାବେ- 'ହଁ ଆମରି ପିଲାଏ ତ ସମୂହ କାମ ପାଇଁ ନେଇଛନ୍ତି, ନିଅନ୍ତୁ।'

ଏତିକି ବେଳକୁ କୋଉଠି ଥାଏ କଳାହାଣ୍ଡିଆ ମେଘ ଉତ୍ତର ପଶ୍ଚିମ କୋଣରୁ ଉଠାଇ ଆସେ। ପିଲାଏ ପାଟି କରି ଗୀତ ବୋଲି ମେଘକୁ ଡରାନ୍ତି-

ଆଣରେ ପିଲାଏ କାଙ୍କ
        ମେଘ ଯାଉ ବାଙ୍କ।
ଆଣରେ ପିଲାଏ କୋଡ଼ି
        ମେଘ ଯାଉ ଉଡ଼ି।
ଆଣରେ ପିଲାଏ ମୂଷାମାଟି
        ମେଘ ଯାଉ ଫସର ଫାଟି।

ମେଘ କାହିଁକି ଶୁଣିବ ? ଟପ୍ ଟପ୍ କରି ଦୁଇଟୋପା ବର୍ଷି ଯାଏ। ଚଟାପଟ୍ ସିନ୍ ଖୋଲ- କାନ୍ଧରେ ପକାଇ ଦୌଡ଼ ଗାଁକୁ। ଚାହୁଁ ଚାହୁଁ ଗାଁ ଦାଣ୍ଡରେ ଆଣ୍ଠୁଏ ପାଣି। ଘୁଙ୍ଗା

ବାଲିଆ କାଗା । ମେଘ ଛାଡ଼ିଗଲେ ସବୁ ଶୁଖିଲା ପାଚିଲା । ପୁଣି ସିନ୍ ଆସେ, ଟଣା ହୁଏ ।

ରଜ ଆଗରୁ ଦୂର ଗାଁର ଅଜାତ ଶ୍ମଶ୍ରୁ ଯୁବକ ମାନଙ୍କର ଭିଡ଼ ଜମେ ଆମ ଗାଁରେ । ସେମାନେ ଆସନ୍ତି ନିଜ ନିଜ ବଂଧୁ ଘରକୁ । ରଜ ତିନିଦିନ ଡ୍ରାମା ଦେଖିଲେ କ'ଣ ମନର ଅରମାନ ମେଣ୍ଟିବ ? ଅନ୍ତତଃ ଦୁଇ ତିନି ଦିନ ରିହର୍ସଲ ଦେଖିବା ଦରକାର । ପୁଣି ସମବୟସୀଙ୍କ ସହିତ ମିଶି ସହଯୋଗ କରିବାରେ ଆନନ୍ଦ ଅଛି- ନିଜକୁ ଅନ୍ୟ ମାନଙ୍କ ସହିତ ମିଶାଇ ଦେବାରେ ତୃପ୍ତି ଅଛି ।

ପନ୍ଦର ଦିନ କାଳ ରିହର୍ସଲରେ ଗର୍ଜ୍ଜି ଗର୍ଜ୍ଜି, ଗୀତ ଗାଇ ଗାଇ ଅଭିନେତାଙ୍କର ତଣ୍ଟି ପଡିଯାଏ । ବଚ୍, ଗୋଲମରିଚ୍ ପାଟିରେ ଯାକନ୍ତି । କିଛି ଫଳ ହୁଏ ନାହିଁ । ଥିଏଟର ଦିନ ସକାଳୁ ସକାଳୁ ଭଗି ଭାଇ ପାନେ ହୋମିଓପ୍ୟାଥିକ ଔଷଦ ଦିଅନ୍ତି, ସେତିକିରେ କଣ୍ଠ ସଫା ।

ପହିଲି ରଜ ଦିନ ଛାଇ ନେଉଟା ବେଳକୁ ଠାକୁରାଣୀ ମାକଣା ପାଇଁ ବାହାରନ୍ତି ଭଗିଭାଇ । ଗାମୁଛା ଦେହରେ ହାରମୋନିୟମ୍ ବାନ୍ଧି କାନ୍ଧରେ ଓହଳାନ୍ତି । ସାଥିରେ ମୃଦଙ୍ଗ ଧରି ବିଶି ଦାଦି । ଗିନି ଚାରି ପାଞ୍ଚ ହଳ । ପିଲା ଭେଣ୍ଡିଆ ମିଶି ଦଶ କି ପନ୍ଦର । ସମସ୍ତେ ଚାଲନ୍ତି ଠାକୁରାଣୀଙ୍କ ଆସ୍ଥାନ ଆଡ଼େ । ସଂକୀର୍ତ୍ତନ କରି ଗାଁ ସାରା ପରିକ୍ରମା କରି ଯା'ନ୍ତି ପୁଣି ସଂକୀର୍ତ୍ତନ କରି ଫେରନ୍ତି । ଗାଁ ଦାଣ୍ଡରେ ସଂକୀର୍ତ୍ତନ ଶୁଭିଲେ ଡ୍ରାମା ହେବ ବୋଲି ମନରେ ପରତେ ଆସେ । ପାଖାପାଖି କୋଡ଼ିଏ ଖଣ୍ଡ ଗାଁରେ ଧେଣ୍ଡୁରା ପିଟା ହୁଏ- ଆଜି ଗୋବିନ୍ଦପୁରରେ ଥିଏଟର ହେବ ।

କାହାକୁ କିଛି କହିବାର ନାହିଁ-ଯାହା କାମ ସେ କରିବ । ବିଶିଭାଇ ଲାଇଟ୍ ଦାୟିତ୍ୱରେ । ସେ ସଂଜ ବୁଡୁ ବୁଡୁ ଦୁଇଟା ଡେ ଲାଇଟ୍ ଲଗାଇ ପଠାଇ ଦେବେ । ପଛରେ ବାକି ଲାଇଟ୍ । ଉଦୟନାଥ ଦାଦି ଆସିବେ ପେଣ୍ଟିଂ କରିବେ । ସାନ ସୁଦି ଭାଇ, ସାନ ମହି ଭାଇ ଡ୍ରେସିଂ କରିବେ । ଗଜି ଭାଇ ଖୋଳ ବଜାଇବେ, ସାନ ଯଦୁ ଭାଇ ଗିନି । ପ୍ରମ୍ପଟିଙ୍ଗ୍ କରିବେ ସାନ ଭଗି ଭାଇ । କେବଳ କଣଙ୍କୁ ଅପେକ୍ଷା । ଲୋକି ଭାଇ ପୁରୀରୁ ଆସିବେ, ତବଲା ବଜାଇବେ । ତାଙ୍କୁ ଛାଡ଼ି ଦେଲେ ଅନ୍ୟ ଯେଉଁମାନେ ତବଲାରେ ହାତ ପକାନ୍ତି, ସେ କାମଚଳା । ବାଥ ରୁମ୍ ସିଙ୍ଗର ଭଳି ।

ଲୋକି ଭାଇଙ୍କର ଜଂଜାଳ ବହୁତ । ଏତେ ଜଂଜାଳ ଭିତରେ ଆସି ପାରିବେ କି ନାହିଁ ସନ୍ଦେହ ରହେ । ମନ ଧୁଡୁ ପୁଡୁ ହୁଏ । କିନ୍ତୁ ସେ ଆସନ୍ତି । ସଂଜ ବୁଡ଼ିବା ଆଗରୁ ବାଙ୍କ ମୁଣ୍ଡରେ ତାଙ୍କର ଧୋବ ଫର ଫର ଲୁଗା ସାର୍ଟ ସାଥିକି ଧୋବ ଫର ଫର ମୁହଁଟି ଦେଖାଯାଏ । ପେଣ୍ଡାଲ ପାଖରେ ପହଞ୍ଚିବା କ୍ଷଣି ସମସ୍ତେ ତାଙ୍କୁ ଘେରି ଯାଆନ୍ତି । ଯେଉଁ ମଧୁର ସ୍ୱର ସୃଷ୍ଟି କରିବାକୁ ଅମିରଖସ୍ରୁ ପଖାଉଜକୁ ଦୁଇ ଖଣ୍ଡ କରି ଗୋଟିଏ ପଟେ

ତବଲା ଆଉ ଅନ୍ୟ ପଟରେ ଡୁଗି ତିଆରି କରିଥିଲେ ସେଇ ମଧୁର ସ୍ୱର ତାଙ୍କ ବାଦ୍ୟରୁ ଝରେ। ବେଳେ ବେଳେ ସେ ହାତରେ ଘୁଙ୍ଗୁର ବାନ୍ଧି ତବଲା ବଜାନ୍ତି। ହାରମୋନିୟମ୍ ତବଲା ଓ ଘୁଙ୍ଗୁରର ଐକ ତାନ ଆକାଶ ସମୁଦ୍ର ଏବଂ ଚନ୍ଦ୍ରିକାର ମହୋତ୍ସବ ଭଳି ଲାଗେ। ଶୁଣିଛି ସେ ପୁରୀରେ ପଢୁଥିବା ବେଳେ ପ୍ରସିଦ୍ଧ ତବଲା ଗୁରୁ କ୍ଷେତ୍ରମୋହନ କରଙ୍କ ଠାରୁ ତବଲା ଶିକ୍ଷା କରିଥିଲେ। କେହି କେହି କହନ୍ତି- 'ଲୋକି ଭଲ ବଜାଏ ଯେ ହେଲେ ତା ବାଜା ଭାରି ତରଳ।' ଅସହଣି ଲୋକଙ୍କ କଥା ୟେ। ସେମାନେ ସକ ମାଛରେ ପୋକ ପକାନ୍ତି।

ଲୋକି ଭାଇ ଆସିଲେ ଗୋଟିଏ ବଡ଼ ଚିନ୍ତା ମୁଣ୍ଡରୁ ଯାଏ।

ଖୋଲା ଆକାଶ ତଳେ ଦେଖଣାହାରି ବସନ୍ତି। ମଝିରେ ବାଉଁଶ ବତାର ବାଡ଼। ଗୋଟିଏ ପାଖରେ ସ୍ତ୍ରୀ, ଅନ୍ୟ ପାଖରେ ପୁରୁଷ। ସଂକ ବୁଡୁ ବୁଡୁ ପିଲାମାନେ ଗୋଟିଏ ଗୋଟିଏ ମଶିଣା ଷ୍ଟେକ୍ ଆଗରେ ପାରି ଦେଇ କଗି ବସନ୍ତି। ସେଥିପାଇଁ ରୀତିମତ ପ୍ରତିଯୋଗିତା। ମଶିଣା ଖଣ୍ଡକ ପଡ଼ିଗଲେ, ତେଣିକି ଥିଏଟର ସରିବା ଯାଏଁ କାଗାଟା ହେଲା ମୌରସି ଦଖଲି ସ୍ୱତ୍ୱ।

ପିଲାଏ କେତେ ସମୟ ଅବା ବସିବେ ? ପୁଅ ପିଲାମାନେ ଲାଇଟ୍ ଆଲୁଅରେ ଆରମ୍ଭ କରିଦେବେ ବାଗୁଡ଼ି ଖେଳ। ପହିକ ଦେଖାଇ ରାହା ଧରିବେ।

ଆଖି ନାହିଁ କାନ ନାହିଁ
ବାଜିଗଲେ ମୋର ଦୋଷ ନାହିଁ।

ପ୍ରତି ପକ୍ଷରୁ ଉତ୍ତର ଆସିବ-ରଣ ହୁଙ୍କାର ଶୁଭିବ-

ପଣସ ପତର ଲାଲ ଲାଲ
ଭାଙ୍ଗି ଦେବି ତୋର ଗାଲ।

ଖେଳ ଚାଲିଥିବ, ଗୀତରେ ଗୀତରେ ରାହା ଧରା ହେଉଥିବ।

ସାନ ସାନ ଝିଅମାନେ ଏକାଠି ବସି ପରସ୍ପରଠାରୁ ପ୍ରହେଳିକାର ସମାଧାନ ଚାହୁଁଥିବେ, କହିଲୁ କହିଲୁ-

ଟିକି ଚଢ଼ାଇ
ଟିକକ ପାଣିରେ ବୁଡ଼ି ମରଇ

ଉତ୍ତର ଆସୁଥିବ 'ଲୁଣ'।

ପୁଣି କିଏ କଣେ ପଚାରୁଥିବ- 'କହିଲୁ ଦେଖି ସ୍ୱର୍ଗରୁ ଖସିଲା ଟୋକାଟିଏ, ତା' ମୁଣ୍ଡରେ ଟୋପିଟାଏ'। ଜଣେ ଉତ୍ତର ଦେଉଥିବ- 'କିଆପଟ'।

- ନାଁ ନାଁ, କିଆପଟ ହେବ ନାହିଁ।

- କାହିଁକି ହେବ ନାହିଁ ନା ? କିଆ ଟ୍ରେର ମୁଣ୍ଡରେ କ'ଣ ଟୋପି ନାହିଁ କି ?

- "କିଆପଟ ନୁହେଁ ଛତୁ । ମୋ ବୋଉ କହୁଥିଲା ଛତୁ ବୋଲି ।"

ଶେଷରେ ସମାଧାନ ହେବ ଛତୁ ହେବ କିଆପଟ ବି ହେବ । ଖେଳ ଚାଲିବ ।

ଭାଇ ଭଉଣୀଙ୍କ ସାଥିରେ ଗୋଡ଼ାଇ ଆସିଥିବା ଟିକି ଟିକି ପିଲାମାନେ ଉଦୁଉଦୁମା ଖେଳରେ ମାତି ଯିବେ

ଉଦୁଉଦୁମା ତାଳ ଗୋଟମା
ତାଳ ପାହାଗୁଣୀ ପିତ୍ତଳ ଶମା
ଆ-ଲୋ ବେଙ୍ଗୁଲୀ ବଜା ଢୋଲ
ଗଣପତି ବୋଲି ଏଇଟି ଚୋର

ପାଖା ପାଖି ଗାଁରୁ ବହୁତ ଲୋକ ଆସନ୍ତି । ଆମ ଗାଁଟି ପୁରା ଉଠିଆସେ ଷ୍ଟେଜ୍ ପାଖକୁ । ଥାଟ ପଟଳ ଲୋକ । ଥାଳି ମାରିଦେଲେ, ଥାଳି ଚାଲିଯିବ ।

ଆମ ଗାଁ ଠାରୁ ତେଇଶିପୁର ଅନେକ ଦୂର । ତଥାପି ସେ ପାଠ ପଢ଼ିଲା ବେଳେ ଆମ ଗାଁକୁ ନାଟକ ଦେଖି ଆସୁଥିଲେ ବୋଲି ଏବେ ଦିନେ ଡାକ୍ତର ରାଜ କିଶୋର ରଥ କହୁଥିଲେ ।

ଆମ ଅଂଚଳରେ ବର୍ଷକରେ ଗୋଟିଏ ଫସଲ ହୁଏ । ରଜ ବେଳକୁ ଚାଷୀ ହାତରେ କାମ ନ ଥାଏ । ରଜ ପରେ ବିଲକାମ ଆରମ୍ଭ ହେବ । ଜ୍ୟୈଷ୍ଠ ମାସିଆ ଖରା ଦିନ । ପ୍ରଚଣ୍ଡ ଉତ୍ତାପ, ଅସହ୍ୟ ଗୁଳୁଗୁଳି । ଏ ଗୁଳୁଗୁଳିରେ କ'ଣ ରାତିରେ ନିଦ ହୁଏ ? ଖୋଲା ଆକାଶ ତଳେ ରାତି ସାରା ଥିଏଟର ଦେଖିବାରେ ଆନନ୍ଦ ଅଛି । ତା ପୁଣି ବିନା ଖର୍ଚ୍ଚରେ । ସେଥି ପାଇଁ ଦେଖଣାହାରିଙ୍କ ସୁଅ ଛୁଟେ ।

ନିକଟରେ ଯେତେ ବନ୍ଧୁବାନ୍ଧବ ଗାଁ ଅଛି ସେଠାରୁ କିଛି କିଛି ଲୋକ ଆସନ୍ତି । ବାଳକାଟି, ଶ୍ରୀରାମପୁର, ଅଚ୍ୟୁତପୁର, ମକୁନ୍ଦଦାସ ପୁର- ଏଥିରୁ ନିର୍ଦ୍ଦିଷ୍ଟ ଜେତେକ ଲୋକ ନିଶ୍ଚୟ ଆସିବେ । ଶୁକଦେବ ଦୋହଡ଼ାରୁ ଆଠ ଦିନ ଆଗରୁ ଆସି ତା ନାନୀ ଘରେ ଡେରା ପକାଇଥିବ । ସାଗୁଆରୁ ଆସନ୍ତି ବେନୁଦାଦି, ବିହାରୀଭାଇ । ଡେରିକିରୁ ଘନ ଭାଇ । ସବୁବର୍ଷ ସେ ଗୋଟିଏ ରୂପାର ମେଡାଲ ଆଣିଥାନ୍ତି । ହରିପୁରରୁ ଆସନ୍ତି ବ୍ରଜ ଶତପଥୀ, ହରିଷିପୁରରୁ ସତ୍ୟପ୍ରିୟ । ଥିଏଟର ଦେଖିବା ଏମାନଙ୍କର ନିଶା ।

ଥିଏଟର ଆରମ୍ଭ ହୁଏ ବିଳମ୍ବିତ ରାତିରେ । ସଂଜ ସଂଜ ଷ୍ଟେଜ୍ ପାଖରେ ନିଆଁ ପୁଳାଏ ଜାଳି, ଯୋଡ଼ି ନାଗରା ସେକି, କାଠି ପାହାର ବସାଏ ତମ ଘରର ଜଣେ । ଆଉ ଜଣେ ମହୁରୀରେ ରହି ରହି ସୁର୍ ଧରେ । ଖାଇ ପିଇ ଗୋରୁ ଗାଈ କାମ ତୁଟାଇ ଚାଷୀମାନେ ଆସିବେ । ତାଙ୍କ ପାଇଁ ଅପେକ୍ଷା କରିବାକୁ ପଡ଼େ ।

ପେଣ୍ଟିଂ ଅଧା ବେଳକୁ ପ୍ରଥମ ଘଣ୍ଟି ବାଜେ 'ଟଣ୍'। ଅଧା ପେଣ୍ଟିଂରୁ ଦୌଡ଼ି ଆସି ଭଗି ଭାଇ ହାରମୋନିଅମ୍‌ରେ ସଂକୀର୍ତ୍ତନର ସୁର୍ ଧରନ୍ତି।

ତଳି ନାଚ୍‌ରେ କାହ୍ନୁ
ପଦ ନୂପୁର ବାଜଇ ରୁଣୁ ଝୁଣୁ

ରାସରୁ ଥିଏଟର ଆରମ୍ଭ ହୋଇଥିଲା ଆମ ଗାଁରେ। ଏ ଧ୍ୱନିଟି ବୋଧହୁଏ ତା'ର ସ୍ମୃତି ସ୍ମାରକୀ।

ମୃଦଙ୍ଗ ବଜାନ୍ତି ଗଜି ଭାଇ।

କି ସୁନ୍ଦର ବଜାନ୍ତି ସେ !

ମନପ୍ରାଣ ପୁଲକିତ ହୋଇ ଉଠେ। ନିଜ ଅଜଣାରେ ମୁଣ୍ଡ ହଲିଯାଏ ମୃଦଙ୍ଗର ତାଳେ ତାଳେ।

ଗିନି ବଜାଇବା ଗୋଟିଏ କଳା। ମୃଦଙ୍ଗର ଗୁରୁ ଲଘୁ ଛନ୍ଦରେ ଗିନି ବଜାନ୍ତି ଯଦୁ ଭାଇ। ସେ ନଥିଲେ ସାନ ମହୀଭାଇ।

ଏହାପରେ ଅନ୍ତରାଳରେ ଗୋଟିଏ, ଦୁଇଟି ଗୀତ। ତା'ପରେ ଅସହ୍ୟ ପ୍ରତୀକ୍ଷା। ଡ୍ରପସିନ୍ ଆଗରେ ଟଙ୍ଗା ହୋଇଥିବା ଦୁଇଟା ଡେ ଲାଇଟ୍ ଚାରିପଟେ ହଜାର ହଜାର ଝଡ଼ିପୋକ, ଉଡ଼ା ପୋକଙ୍କର ଉଦଣ୍ଡ ନୃତ୍ୟ ଦେଖିବା ଭିନ୍ନ ଦର୍ଶକଙ୍କର ଆଉ କିଛି ଉପାୟ ନଥାଏ। ମଝିରେ ମଝିରେ ବୟସ୍କ ଲୋକେ ଆସି ତାଗିଦ୍ କରନ୍ତି- 'ଆଉ ଡେରି କର ନାହିଁ, ଲୋକେ ବ୍ୟସ୍ତ ହେଲେଣି।' ଚାଞ୍ଚ କଣା କରି ବେଶ୍ କେଇଟି ଉତ୍ସୁକ ଆଖି ପେଣ୍ଡାଲ ଭିତରର ଚଳ ଚଞ୍ଚଳତା ଲକ୍ଷ୍ୟ କରନ୍ତି। ସୁନାଖିଲଦିଆ ଦାନ୍ତ ଚୋବାଇ ଝପଟି ଆସନ୍ତି ପାଣୁ ଦାଦି- 'ଏଠି କ'ଣ କରୁଛ ? ଯାଅ- ଯାଅ।'

ନାଟକ ଆରମ୍ଭ ହୁଏ କିନ୍ତୁ ପ୍ରତୀକ୍ଷାର ଶେଷ ହୁଏ ନାହିଁ। ଗୋଟିଏ ଦୃଶ୍ୟ ପରେ ପୁଣି ବିରତି। ଦ୍ୱିତୀୟ ଦୃଶ୍ୟ ପାଇଁ ପ୍ରସ୍ତୁତି। ପ୍ରଚ୍ଛଦପଟରେ ସଙ୍ଗୀତ। ମାଇକ୍ ତ ନ ଥାଏ। କେତେ ଲୋକଙ୍କୁ ଅବା ଶୁଭିବ ? ସେଥିପାଇଁ ମଝିରେ ମଝିରେ ଭ୍ରମର ଭାଇ ବେଲି କାଢ଼ନ୍ତି। ତାଙ୍କୁ ପୁଣି ପେଣ୍ଟିଂ ପୋଛି ଡ୍ରେସ୍ ବଦଳାଇ ବାହାରିବାକୁ ହେବ। ନାଟକର ସେ ମୁଖ୍ୟ ହାସ୍ୟ ଅଭିନେତା। ହାସ୍ୟ ଅଭିନେତା ଭାବରେ ତାଙ୍କର ସୁଖ୍ୟାତି ବେଶ୍। ସେ ମୁହଁ କାଢ଼ିଲେ ଲୋକେ ହସି ହସି ଗଡ଼ି ଯାଆନ୍ତି। ବେଳେ ବେଳେ ଫାର୍ସ ମାଧ୍ୟମରେ ସେ ହସର ଶ୍ରେଣୀ ବିଭାଗ ପରିବେଷଣ କରନ୍ତି। ଯେ ଫାର୍ସର ତୁଳନା ନାହିଁ। ପ୍ରଥମେ ନିକୁଟି ହସ, ତା'ପରେ ଧଇଁ ହସ, ଖଣ୍ଡ ହସ, ଲତା ହସ। କ୍ରମାନ୍ୱୟରେ ଗୋଟିକ ପରେ ଗୋଟିଏ ହସ ପରିବେଷଣ କରନ୍ତି। କ୍ଲାଇମାକ୍ସ ଲତା ହସରେ। ଅବିରାମ ହସର ଜୁଆର ଛୁଟେ ତାଙ୍କ ମୁହଁରୁ। ଦର୍ଶକଙ୍କୁ ସମ୍ଭାଳେ କିଏ ?

ହସି ହସି ଫାଟି ପଡ଼ନ୍ତି, ଗଡ଼ି ଯାଆନ୍ତି। ଯତେ ଯେପରି ରାଶି ରାଶି କାଶତଣ୍ଡୀ ଫୁଲ ଦମକା ଦମକା ପବନରେ ଲୋଟି ଯାଉଛି- ଅଳ୍ପ ସଳଖି ଠିଆ ହେଉଛି ପୁଣି ଗୋଟାଏ ଦମକା ପବନରେ ମାଟିରେ ମିଶି ଯାଉଛି।

ପାର୍ଟ ଘୋଷିବା ଲୋକଙ୍କ ସଂଖ୍ୟା କମ୍। ପ୍ରମ୍ପଟିଙ୍ଗ୍ ଉପରେ ବେଶି ନିର୍ଭର। ସମସ୍ତେ ପୋଖତ କଳାକାର ତ ! ଚଳାଇ ନେବେ ନାହିଁ ! କିନ୍ତୁ ଷ୍ଟେଜ୍ ଉପରେ ଯେତେବେଳେ ଅସଲ ଡାଇଲଗ୍ ନ କହି ଏଣୁ ତେଣୁ କହନ୍ତି କିମ୍ବା ବାଟ ହୁଡ଼ନ୍ତି ସିନ୍ ପଡ଼ିବା ସଙ୍ଗେ ସଙ୍ଗେ ଗାଲରେ ଗୋଟାଏ ଠୋ କରି ବ୍ରହ୍ମ ଚାପଡ଼ା ବସେ। ମୁହଁଟି ଶୁଖିଯାଏ ସିନା ପ୍ରତିବାଦ ନ ଥାଏ କି ପ୍ରତିରୋଧ ନ ଥାଏ। ମଝିରେ ମଝିରେ ବାବାଜୀ ବେଶରେ ଆସି ଖଂଜଣିଟିଏ ଧରି ଗୀତ ଗାଆନ୍ତି ବିଶ୍ୱନାଥ ସାହୁ। କଣ୍ଠ ସୁନ୍ଦର। ଖଂଜଣି ବି ଭଲ ବଜାନ୍ତି।

ସାନ ସାନ ପିଲାମାନେ ବାହାରନ୍ତି କେଳା କେଳୁଣୀ ବେଶରେ। ଭ୍ରମର ଭାଇ ତାଙ୍କୁ ଗୀତ ଶିଖାନ୍ତି। ପଦେ ପଦେ ମୋର ମନେ ପଡୁଛି। କେଳୁଣୀ ପଚାରେ-

କଳା ଚାରି ଜାତି କହ ଶବରରେ
କଳା ଚାରି ଜାତି କହ
କଳା ଚାରି ଜାତି ନ କହି ପାରିଲେ
ମୋର ଗୋଡ଼ ମୋଡ଼ି ଦେବୁ ରହ।

କେଳା ଉତ୍ତର ଦିଏ-

କାଉ କୋଇଲି ଏ ଦୁହେଁ କଳା ଲୋ
କଳା ମହାନଦୀ ପାଣି
ଆଉ କିସ କଳା କହିବି ମୁହିଁ
କଳା ତୋ ମଥାର ବେଣୀ।

ସମୟର ରଥ ଚକ ତଳେ ପେଷି ହୋଇ ଏସବୁ ଗୀତ ଲୋପ ପାଇ ଗଲାଣି। ଆଜି ଏସବୁ ଅଲୋଡ଼ା ଇତିହାସର ଛିନ୍ନ ପୃଷ୍ଠା।

ନାଟକ ଶେଷରେ ଯଦି ପ୍ରେମିକ ପ୍ରେମିକାଙ୍କର ମିଳନ ଥାଏ ତେବେ ରୀତିମତ ବାହାଘର ହୁଏ। ମହୁରୀ ବାଜେ, ଶଙ୍ଖ ହୁଳହୁଳି ପଡ଼େ, ଦୋଳ ମୁକୁଟ ସହିତ ହାତ ଗଣ୍ଠି ପଡ଼େ। ଉଇଙ୍ଗସ୍ ଦାଡ଼ରୁ କେହି ଜଣେ ମଙ୍ଗଳାଷ୍ଟକ ପଢ଼େ-

ଧେନୁର୍ବତ୍ସା ପ୍ରଯୁକ୍ତା ବୃଷଗଜ ତୁରଗାଃ
ଦକ୍ଷିଣାବର୍ତ୍ତ ବହ୍ନି
ଦିବ୍ୟ ସ୍ତ୍ରୀ ପୂର୍ଣ୍ଣକୁମ୍ଭ ଦ୍ୱିଜନୃପ ଗଣିକା
ପୁଷ୍ପମାଳା ପତାକା

ସଦ୍ୟଃମଦ୍ୟଃଘୃତଂ ବା ଦଧି-ମଧୁ-ରଜତଂ
କାଞ୍ଚନଂ ଶୁକ୍ଳ-ଧାନ୍ୟଂ
ମଣି-ମାଣିକ୍ୟ-ଲାକା ଶୁକ-ପିକ-ନକୁଳାଃ
କୁର୍ବନ୍ତୁ ତେ ମଙ୍ଗଳଂ ।

ମିଳନାତ୍ମକ ନାଟକର ପୂର୍ଣ୍ଣ ସ୍ୱାଦ ଦର୍ଶକମାନେ ଉପଭୋଗ କରନ୍ତି ।

ନାଟକ ଶେଷରେ ଆସନ୍ତି ଭ୍ରମର ଭାଇ ବ୍ୟଙ୍ଗ ପାଲା କରିବାକୁ । ସାଥିରେ ଗୋପାଳମାମୁଁ ପାଳିଆ । ମୃଦଙ୍ଗ ଧରି ଗଜି ଭାଇ । ପାଲାବାଲାଙ୍କ ଚଅଁର, ପଗଡ଼ି, କୁଣ୍ଡଳ ସବୁ ସଂଗ୍ରହ କରି ରଖିଥାନ୍ତି । ଅବିକଳ ପାଲାକାରଙ୍କ ଭଳି ପାହୁଲ ପକାନ୍ତି, ପହିକ କାଢ଼ନ୍ତି, ଗିନି ବଜାନ୍ତି, ମକର କୁଣ୍ଡଳ ହଲାନ୍ତି । ଏଥିପାଇଁ ମଉକିଆ ଗୀତ ସେ ରଚନା କରିଥାନ୍ତି- ଗାଁର ବିଭିନ୍ନ ଲୋକ, ବିଭିନ୍ନ ଘଟଣାକୁ ବିଦ୍ରୂପ କରି । ଗୋଟିଏ ପଦ ମନେ ପଡୁଛି-

ହେ କେମ୍ପୀ ଚମ୍ପୀ ନାନୀ ଆସୁଛି
ତମ୍ପ ସାପ ପରି ମୁହଁ କରିଛି ।

ଭଗିଭାଇଙ୍କ ସ୍ତ୍ରୀଙ୍କ ନାଁ ଚମ୍ପା । ତାଙ୍କୁ ଲକ୍ଷ୍ୟ କରି ଏ ବିଦ୍ରୂପ । ଏ ଥଟା ପରିହାସ 'ବିରିନ୍ଦା' ବେଲି କାଢୁଛି ବୋଲି କେହି ମନରେ ଧରନ୍ତି ନାହିଁ ।

ଭ୍ରମର ଭାଇ ପାଲାରେ ଚଉଦ ଅକ୍ଷରୀ ଗାଇଲା ବେଳେ ଗୋପାଳମାମୁଁ ପହଳି ଧରନ୍ତି- 'ଆରେ ବିରିନ୍ଦାରେ-ବିରିନ୍ଦାରେ ବିରିନ୍ଦା' । ଏପରି ହେଲା ଆମ ଗାଁରେ କିଛି ଲୋକ ଭ୍ରମର ଭାଇଙ୍କୁ ବିରିନ୍ଦା ବୋଲି ଡାକିଲେ । ପ୍ରଥମେ ପ୍ରଥମେ ତ ଥଟାରେ ଡାକୁଥିଲେ । ପରେ ଏଇଟି ଗୋଟିଏ ସାମ୍ବୋଧନିକ ନାଁରେ ପରିଣତ ହୋଇଗଲା ।

ମଂଚ ପରିଚାଳନା କରନ୍ତି ଜୟିଭାଇ । ଏଇଟି ଗୋଟିଏ ବଡ଼ ଦାୟିତ୍ୱ । ନାଟକର ସଫଳତାର ଗୋଟିଏ ଚାବି କାଠି ନିର୍ଦ୍ଦେଶକ ହାତରେ ତ ଅନ୍ୟ ଚାବି କାଠିଟି ମଂଚ ପରିଚାଳକ ହାତରେ । କବିଚନ୍ଦ୍ରଙ୍କ ଭାଷାରେ କହିଲେ, 'ନିର୍ଦ୍ଦେଶକ ନାଟକର କଥାବସ୍ତୁ, ପାତ୍ର ମୁଖୀ ଭାଷା, କଥା କହିବା ଭଂଗୀ ତଥା ରସ ଭାବ ଅନୁସାରେ ଅଭିନୟ ଇତ୍ୟାଦି ଇତ୍ୟାଦି ନାନା ବିଷୟ ଶିଖାଏ ସିନା ମଞ୍ଚରେ କିନ୍ତୁ ନାଟକ ପରିବେଷଣ ବେଳେ ସେ ଅଲଗା ହୋଇଯାଏ । ଏଠାରେ ମଂଚ ପରିଚାଳକଙ୍କ ଦାୟିତ୍ୱ ବେଶି ।'

ଥରେ ଥରେ ନାଟକ ଅଧା ହୋଇଥିବ ତୁ ତୁ ବର୍ଷା ଅଜାଡ଼ି ଦେଇଯିବ । ପୁଣି ପରଦିନ ସେଇ ନାଟକ ହେବ । ମୋର ମନେଅଛି- ମୁଁ ପିଲାଟିଏ ହୋଇଥିଲି, ତାରାବାଈ ନାଟକ ଅଭିନୀତ ହେଉଥାଏ । ଠିକ୍ ତାରାବାଈ ପାଇଁ ସତୀ ଚିତା ପ୍ରସ୍ତୁତ ହେବା ବେଳକୁ କାହୁଁଥିବ ବର୍ଷା ଆସି ଅଜାଡ଼ିବ । ଚାରିଦିନ ପର୍ଯ୍ୟନ୍ତ ନାଟକ ଶେଷ ହୋଇପାରିଲା ନାହିଁ । ପଞ୍ଚମ ଦିନ ଆଉ ବର୍ଷା ହେଲା ନାହିଁ । ନାଟକ ଶେଷ ହେଲା ।

ଯେଉଁଦିନ ପେଣ୍ଡାଳ ସରିବା ପରେ ବର୍ଷା ଆରମ୍ଭ ହୋଇଯାଏ ସେଦିନ କି ଦୁଃଖରେ ଅଭିନେତାମାନେ ମୁହଁରୁ ପାଉଡ଼ର ପୋଛି ଘରକୁ ଫେରନ୍ତି ସେ ଦୁଃଖ କେବଳ ଅନୁଭବୀ ହିଁ ଜାଣେ।

ବେଳେବେଳେ ରଜ ଚାରି କି ଛଦିନ ଥିବ ଆକାଶରେ ମେଘଘୋଡ଼ାଇ ଝୁପ୍ ଝୁପ୍ ବର୍ଷା ଆରମ୍ଭ ହେବ। ଦିନେ ଯିବ, ଦୁଇ ଦିନ ଯିବ, ବର୍ଷା ଛାଡ଼ିବାର ଆଭାସ ମିଳିବ ନାହିଁ। ବାଞ୍ଛା ଅବଧାନେ ପାଠ ଉଦ୍ଧାର କରି କହିବେ-

'ଶନି ସାତେ ମଙ୍ଗଳ ତିନ୍
ଆଉ ସବୁ ବାରେ ଦିନ୍ ଦିନ୍

ଶନିବାରେ ମେଘ ଆରମ୍ଭ ହୋଇଛି। ତହିଁକି ପୁଣି ପଞ୍ଚଗ୍ରହ କୂଟ କାଲିଠାରୁ। ଏ ମେଘ ତ କାହିଁକି ଛାଡ଼ିଲା ଭଳି ଲାଗୁ ନାହିଁ।' ପିଲାମାନେ ରୋଷାଇ ଘର ବାହାର କାନ୍ଥରେ ଗୋବରର ଗୋଟିଏ ମୂର୍ତ୍ତି ଥାପନା କରି ତା ମୁହଁରେ ଖଣ୍ଡିଏ ଡିରଣ ଧରାଇ ପୂଜା କରିବେ। ନିତି ସଂଜକୁ ଧୂପ ଦେବେ। ପ୍ରାର୍ଥନା କରିବେ- 'ହେ ମା ଦାନ୍ତ ନିକୁଟି, ବର୍ଷା ଛାଡ଼ି ଯାଉ।' ପୁଣି, ଅନ୍ଧାର ରାତିରେ ଜଣେ ଯୁବକ ଉଲଗ୍ନ ହୋଇ ପେଣ୍ଡାଲ ଉପରେ ଦୀପଟିଏ ପୋତି ଦେଇ ଆସିବ। ଏସବୁ ଉପଚାର କଲେ କୁଆଡ଼େ ବର୍ଷା ଛାଡ଼ିଯାଏ।

ରଜ ତିନିଦିନ ଧରି ନାଟକ ମଞ୍ଚସ୍ଥ ହୁଏ।

ଥିଏଟର କାମରେ ଖଟି ଖଟି ଦେହ ହାତ ଦରଜ। ଆଖି ମାଡ଼ି ମାଡ଼ି ପଡୁଥାଏ। ହେଲେ ସରାଗ ମଉଳି ନ ଥାଏ। ସବୁ ଘରୁ ଚାଉଳ, ଡାଲି ପରିବା କାଠ ସଂଗ୍ରହ ହୁଏ। ଗାଡ଼ିଆରୁ ଦିଟା ଛୋଟ ମାଛ। ଠାକୁରାଣୀଙ୍କ ପାଖରେ ଭୋଜି ହୁଏ, ସଂଗୀତର ଆସର ଜମେ। ରାତି ଅଧବେଳକୁ ସମସ୍ତେ ମୁହଁ ଶୁଖାଇ ବାହୁଡ଼ନ୍ତି। ବଞ୍ଚିଥିଲେ ପୁଣି ଆର ରଜକୁ।

ରଜ ଆସିବ, ଆସିବ ବୋଲି, ରଜ ଆସି, ଯାଏ। ସ୍କୁଲ କଲେଜ ଖୋଲେ। ଯେ ଯାହା ବାଟରେ ଯାଆନ୍ତି। ହେଲେ ମନ କେଉଁଠି ଲାଗେ ନାହିଁ। ଏକୁଟିଆ ଏକୁଟିଆ ଛଟପଟ ଲାଗେ ବେଶ୍ କିଛିଦିନ ଯାଏଁ।

'ଭୂଗୋଳ ପୋଥି ପତରେ' ନାଁ ନଥିବା ଗୋଟିଏ ଛୋଟ ଗାଁ ଗୋବିନ୍ଦପୁରର କାହାଣୀ ଯେ।

ପୁରୀ ଜଗନ୍ନାଥ ସଡ଼କ ଧାରରେ ପିପିଲି ଆଉ କୌଶଲ୍ୟାଗଂଗ ମଝାମଝି 'ଗୁଡ଼ିଆ ପୋଖରୀ'। ଗୁଡ଼ିଆ ପୋଖରୀର ନାଁ କୋଉ କାଳରୁ ଡାକ। ରାସ୍ତାକଡ଼ରେ ଗୋଟିଏ ବାମ୍ଫୀ ରାଣୀ ଅହଲ୍ୟାବାଈଙ୍କ କୀର୍ତ୍ତି ଏ। ପାଖରେ ଗୋଟିଏ ପୋଖରୀ। ବର୍ଷ ସାରା ପାଣି ରହେ। ଗୁଡ଼ିଆଟିଏ ପୁରୁଷାନୁକ୍ରମେ ସେଇ ବାମ୍ଫୀ ମୂଳରେ ବସି ମୁଡ଼ି ଉଖୁଡ଼ା ବିକେ। ପାଖ ପୋଲାଙ୍ଗ ତୋଟାରେ ପଲାଟିଏ କରି ରହେ। ଶୁଣିଛି, ସେ ଭାତ ରାନ୍ଧିଲାବେଳେ ଗୋଟିଏ କଷି ପୋଲାଙ୍ଗ ତା ଭିତରେ ପକାଇ ଦିଏ। ପଖାଳ ଭାତ, ପୋଲାଙ୍ଗ ଚକଟାରେ କାମ ଚଳାଇ ନିଏ। ଜଗନ୍ନାଥ ଦର୍ଶନ ପାଇଁ ଦୂର ଦୂରାନ୍ତରୁ ଆସିଥିବା ପଥଚାରୀ ଯାତ୍ରୀମାନେ ଏଇଠି ଘଡ଼ିଏ ବସି ଥକା ମେଣ୍ଟାନ୍ତି, ଜଳପାନ କରନ୍ତି। କଲିକତା ଫେରନ୍ତି ଲୋକମାନେ ସକାଳୁ ସକାଳୁ ଭୁବନେଶ୍ୱର ଷ୍ଟେସନରେ ଓହ୍ଲାଇ, ଏଇଠି ଆସି ଦାନ୍ତ ଘଷନ୍ତି-ମୁଡ଼ି ଉଖୁଡ଼ା ପାଟିରେ ପକାନ୍ତି। ସଂଜ ହେଲେ ଗୁଡ଼ିଆଟି ତା ଗାଁକୁ ଚାଲିଯାଏ। ସରଦେଈପୁର ଚଟି ଘର ଛାଡ଼ିଲେ ପିପିଲି ସଦାବର୍ତ୍ତ ମଠ। ମଝିରେ ଆଉ ରାତି କଟାଇବାର ସୁବିଧା ନାହିଁ। ଯାତ୍ରୀମାନେ ହଟହଟା ହୁଅନ୍ତି। ଗୁଡ଼ିଆଟି ସେଇଠି ଚଟି ଘର କେଇଟି କରି ଯାତ୍ରୀମାନଙ୍କୁ ଡାଲି ଚାଉଳ ଠାରୁ ବାସନ ପର୍ଯ୍ୟନ୍ତ ସବୁ ଯୋଗାଇଲା। ମୋ ହେତୁ ପାଇଲା ବେଳକୁ ସେ ସବୁ ନିଶ୍ଚିହ୍ନ ହୋଇ ଯାଇଥିଲା। କେବଳ ଗୁଡ଼ିଆଟିଏ ବାମ୍ଫୀ ମୂଳରେ ବସି ମୁଡ଼ି ଉଖୁଡ଼ା ବିକୁଥିଲା।

ପଦଯାତ୍ରାବେଳେ ଗାନ୍ଧିଜୀ, ବିନୋବାଜୀ ଏଇଠି ବିଶ୍ରାମ କରିଥିଲେ। ଗାନ୍ଧିଜୀଙ୍କ ଦଶାହ ଦିନ ଆମେ ସ୍କୁଲ ପିଲାମାନେ 'ମହାତ୍ମାଗାନ୍ଧି କି ଜୟ' କହି ଏଠାରେ ଭକ୍ତି ଅର୍ଘ୍ୟ ଅର୍ପଣ କରିଥିଲୁ। ତା'ପରେ ଗାନ୍ଧି ଏଠାରେ ବିଶ୍ରାମ କରିଥିବା କଥା ଆଉ କେହି ମନେ ପକାଇ ନାହାନ୍ତି। ତାଙ୍କ ନାଁରେ ପଥର ଖଣ୍ଡେ ବି ପୋତା ହୋଇ ନଥିଲା। ଏବକୁ ଏଠି ଗୋଟିଏ ଛୋଟ ବଜାର ଗଢ଼ି ଉଠିଛି। ଗାନ୍ଧି ବଜାର।

ଗୁଡ଼ିଆ ପୋଖରୀ ଡେଇଁଲେ ଦଧି ସାହୁ ପାଟଣା। ଆମ ଗାଁ ଲୋକେ ସେତେବେଳେ ଏଇ ଗାଁ ଦେଇ ଯିବା ଆସିବା କରୁଥିଲେ। ବେଛପରି ଗାଁ। ଗାଁ'ଟି କୋଉ କାଳରୁ ନିଶ୍ଚିହ୍ନ ହୋଇ ଯାଇଥିଲା। ନାଁଟି ମାତ୍ର ରହିଥିଲା। ବାମ୍ଫୀଟିଏ ଅଛି। ପୋଖରୀଟିଏ ଅଛି। ସେଇ ଅହଲ୍ୟା ବାଈଙ୍କ କୀର୍ତ୍ତି। ଯେଉଁ ଯାତ୍ରୀମାନେ ଜଗନ୍ନାଥ ଦର୍ଶନ ପୂର୍ବରୁ ଉଷୁନା ଛୁଅନ୍ତି ନାହିଁ ସେମାନଙ୍କ ପାଇଁ ରାଜସ ମଠ ମହନ୍ତ ହରେକୃଷ୍ଣ ଦାସ କେଉଟ ଘରଟିଏ ବସାଇଥିଲେ ଏଇଠି। ଯାତ୍ରୀମାନେ ହାତ ମୁହଁ ଧୋଇ, ଅଣ୍ଟିରେ ଅଣ୍ଟିଏ ଚୂଡ଼ା ଧରି କ୍ଳାନ୍ତି ହୀନ ଯାତ୍ରା ପଥରେ ଆଗକୁ ପାଦ ବଢ଼ାନ୍ତି। ସମବେତ କଣ୍ଠରେ ଗାଆନ୍ତି, 'ଭଲେ ବିରାଜୋ ଜୀ ଜଗନ୍ନାଥ ପୁରୀ ମେ'।

ଗୁଡ଼ିଆପୋଖରୀ ଦହିସାହୁ ପାଟଣା ମଝାମଝି ଆମ ଗାଁ; ଗୁଡ଼ିଆ ପୋଖରୀ ଠାରୁ ପିପିଲି ଆଡ଼କୁ ଦୁଇଶହ ମିଟର ଯିବା ପରେ ବାଁ ହାତି ଏବର ଯେଉଁ ପିଚୁ ରାସ୍ତାଟି ସାପେଇ ସାପେଇ ଲମ୍ବି ଯାଇଛି ତାରି କଡ଼ରେ। ଜଗନ୍ନାଥ ସଡ଼କ ଠାରୁ ପାଇ ନ ପାଇ ଦେଢ଼ କିଲୋମିଟର ଦୂର। ରାସ୍ତା ତଳକୁ ବାଁ ପଟେ ଗଡ଼ିଗଲେ ମାଇନର ସ୍କୁଲ, ଅପର ପ୍ରାଇମେରୀ ସ୍କୁଲ, ମେଳନ ତୋଟା, ତା'ପରେ ଗାଁ। ଡାହାଣପଟେ ହାଇସ୍କୁଲ। ଦିପଟେ ଚାଳକୁ ଚାଳ ଲାଗି ପାଞ୍ଚ ଶେଣିଆଁ ଘର। ମଥାନ ଉପରେ ଶିଶୁର କାକପକ୍ଷ ଭଳି ଓହଳି ପଡ଼ିଥାଏ ନଡ଼ିଆ ବାହୁଙ୍ଗା। ନଡ଼ିଆ ଗଛର ଫାଙ୍କେ ଫାଙ୍କେ ଦିଶେ ଆମ୍ବ ବାଉଁଶର ପତ୍ର ଉହାଡ଼ରୁ ଗୋଡ଼ ଟେକି ଉହୁଙ୍କି ଚାହିଁଥିବା ତାଳ ଗଛର ପତ୍ର ଶୀର୍ଷ। ଗାଁ ମୁଣ୍ଡରୁ ଚାହିଁଲେ ସତୀଶ ଚନ୍ଦ୍ର ସରକାରଙ୍କର ଗ୍ରାମପଥ ସିନ୍‌ଟିଏ ଭଳି ଦିଶେ। ବାଁ ପଟେ ପଡ଼େ ଆଉ ଗୋଟିଏ ସାହି। ଆମେ ତାକୁ ତଳ ସାହି ବୋଲି କହୁ। ଗାଁ ଦିପଟେ ଅଳ୍ପ ଦୂରରେ ପଧାନ ସାହି, ମୁଦୁଲି ସାହି, ବେହେରା ସାହି। ଗାଁ ପାରି ହେଲେ ବିସ୍ତୀର୍ଣ୍ଣ ଶ୍ୟାମଳ ପଡ଼ିଆ, ବୁଦୁବୁଦୁକିଆ ଦୁଧକୋଳି ଗଛରେ ଭରା। ଠାଏ ଠାଏ ଶଗଡ଼ ବାଟୁଆ କୋଳି ଗଛ।

ଏଇ ପଡ଼ିଆ ଭିତରେ ଗୋଟିଏ ବଡ଼ ବରଗଛ ଥିଲା। ନାଁ ପାଲାବର। ଅକ୍ଟୋପାସ୍ ଭଳି ଲମ୍ବି ଯାଇଥିଲା ଶାଖା ପ୍ରଶାଖା। ଝୁଲି ପଡ଼ିଥିବା ବର ଓହଳ ସବୁ ମାଟି ଛୁଇଁ ଗଛରେ ପରିଣତ ହୋଇଥିଲା କୋଉ କାଳରୁ। ଗାଁ ପିଲାଏ ଏଇଠି ଡାଳ ମାଙ୍କୁଡ଼ି ଖେଳନ୍ତି, ବର ଓହଳରେ ଦୋଳି ଖେଳନ୍ତି, ନୁଆଁଣିଆ ଡାଳକୁ ଘୋଡ଼ା କରି ତା ଉପରେ ବସନ୍ତି। ମୁରବୀମାନେ ଭର୍ତ୍ସନା କରନ୍ତି- 'କିଏ ସିନା ଘୋଡ଼ାରେ ଚଢ଼ି ହକର ହକର, ଯେ ପିଲା ବରଡାଳରେ ଚଢ଼ି ହକର ହକର'।

ଶୁଣିଛି ଆମଗାଁ ଠାକୁରାଣୀଙ୍କ ଆସ୍ଥାନ ଆଗରେ ପ୍ରତିବର୍ଷ ବାଦୀ ପାଲା ହେଉଥିଲା। ଶହ ଶହ ଲୋକ ଏଇ ଗଛମୂଳେ ବସି ବାଦୀପାଲା ଶୁଣୁଥିଲେ। ସେଥିପାଇଁ ଯା'ର ନାଁ ପାଲାବର। ମୋରି ଆଖି ଆଗରେ ଦିନେ ଏଇ ବରଗଛଟି ପ୍ରବଳ ବାତ୍ୟାରେ ଟଳି ପଡ଼ିଲା। ବାଦୀପାଲା କୋଉକାଳରୁ ବନ୍ଦ ହୋଇ ଯାଇଥିଲା। ପାଲାବର ବି ତା ବାଟ ଧରିଲା।

ଗାଁ ଚାରିପଟେ ଆଖି ବୁଲାଇ ଆଣିଲେ ଚାରିଆଡେ କେବଳ ବାଲି ଡିପ। ଘାସ ଆଡ଼େଇଲେ ଘୁଙ୍ଗାବାଲି, ରାଶି ରାଶି ବାଲିଗରଡ଼ା ବିଭିନ୍ନ କିସମର, ବିଭିନ୍ନ ରଂଗର। ପୋଖରୀଟିଏ ଅଛି, ତା ନାଁ ବାଲିଗାଡ଼ିଆ, ପାଖ ଗାଁ ନାଁ ବାଲି ସାହି। ଠାକୁରାଣୀଙ୍କ ନାଁ ବୋଧହୁଏ ବାଲି ଅବଳା କି ବାଲି ଅଲ୍ୟାଳୀ ଥିଲା। କ୍ରମେ ଅବଳାବାଳୀରେ ନାମାନ୍ତରିତ ହୋଇଛି। ଆଜି ଯେଉଁଠି ଗାଁଟି ଗଢ଼ି ଉଠିଛି ସେଇଠି ଭାର୍ଗବୀ ନଦୀର ସରୁ ଧାରଟିଏ ହୁଏତ ବର୍ଷାଦିନେ ବହୁଥିଲା। ଏଇ ଶାଖାନଦୀରୁ ବିଛିନ୍ନ ହୋଇ 'ଗୋଦାନଈ' ବୋଲି

ଏବେ ବି ଗୋଟିଏ ବର୍ଷାଦିନିଆ ଜଳଧାର ପିପିଲି ପାଖଦେଇ ବହି ଯାଉଛି। 'ଭାଲିଆଗଣ୍ଡ' ବୋଲି ପୋଖରୀଟିଏ ଗାଁ ପାଖରେ ଅଛି। ମନେହୁଏ କେଉଁ ସ୍ମରଣାତୀତ କାଳରୁ ଏଇ ଛିନ୍ନଧାର ଶୁଷ୍କ ନଦୀ ଶଯ୍ୟା ଉପରେ ଗାଁଟି ଗଢ଼ି ଉଠିଛି।

ବର୍ଷାଦିନେ ପାଖ ଗାଁର ମଇଁଷିଆଳମାନେ ଏଇ ପଡ଼ିଆର ବାଲିବନ୍ତ ଉପରେ ରାତିରେ ମଇଁଷି ଗୋଠ ପକାନ୍ତି। ରାତି ଅଧରେ ବର୍ଷା ଯେତେବେଳେ ଝମ ଝମ ଶବ୍ଦରେ ମେଦିନୀ କମ୍ପାଏ ସେତେବେଳେ ମଇଁଷିଆଳ ଧୁଡୁକି* ବଜାଏ। ବର୍ଷାର ଝପ୍‌ଝପ୍ ସ୍ୱର ସହିତ ଧୁଡୁକିର ଟୁଁ ଟୁଁ ସ୍ୱରର ଯୁଗଳ ବନ୍ଦିସ୍ ମନଭିତରୁ ଦୁଃଖ, ଶୋକ, ଦୁର୍ଭାବନା ବାହାରିଙ୍କି ଟାଣି ନେଇଯାଏ ବେଶ୍ କେତୋଟି ମୁହୂର୍ତ୍ତ ପାଇଁ।

ଗାଁରେ ଗୋଟିଏ ଛୋଟିଆ ମେଳନ ହୁଏ। ଲୋକମୁଖରେ ଯା'ର ନାଁ 'ପାରିତୋଟା' ମେଳନ। ମେଳନ ଅଛି କିନ୍ତୁ ଏ ନାଁଟି ବିସ୍ମୃତିର ଅନ୍ତରାଳରେ ଲୁଚି ଗଲାଣି। ଚୈତ୍ର ଶୁକ୍ଳପକ୍ଷ ଦ୍ୱିତୀୟା ଦିନ ରାତି ପାହା ପାହା ବେଳକୁ ମେଳନ ଆରମ୍ଭ ହୁଏ। ଏ ମେଳନ ଆମ ଅଂଚଳରେ ପ୍ରଥମ ମେଳନ। ଘୋଡ଼ା ନଚାଇବା ଯେଉଁମାନଙ୍କର ନିଶା ସେମାନେ ହାତ ଗୋଡ଼ ବାନ୍ଧି ବର୍ଷେକାଳ ବସିଛନ୍ତି। କୋଉ ଦିନରୁ ଗୋଡ଼ ଖଲବଲ ହେଉଛି। ଯୋଡ଼ି ମହୁରୀ ସାଥିରେ ଢୋଲ ଯେତେବେଳେ ବାଜି ଉଠେ ତାଙ୍କୁ ଆଉ ସମ୍ଭାଳେ କିଏ ? ଘୋଡ଼ା ନାଚରେ ଗାଁ ଦାଣ୍ଡର ବଗଡ଼ା ବାଲି ଧୂଳି ପାଲଟି ଯାଏ। ଏତକିବେଳେ ମହୁରୀଆ ଯଦି ବିଲମ୍ବିତ ଲୟରେ 'ଚ୍ଛେଡି ଚତୁରୀ ଚାହିଁଲା ନିଶି ନାଶେ' ପକାଇ ଦେଲା, ଘୋଡ଼ା ନଚାଳୀଙ୍କ ରାଗ ଦେଖେ କିଏ ? ଘୋଡ଼ା ଛାଡ଼ି ଆସି ମହୁରୀଆକୁ ଚଟକଣାଟାଏ ପକାଇ ଦେବେ।

- 'ଏ ଗୀତରେ କ'ଣ ଗୋଡ଼ର ଗଲୁ ମରିବ ?'

କିନ୍ତୁ ଏଇଭଳି ରୂପକ ତାଳରେ ଘୋଡ଼ା ନାଚର କଳାତ୍ମକ ଦିଗଟି ପ୍ରକାଶିତ ହୁଏ। ମନେହୁଏ ଘୋଡ଼ାଟି ଯେପରି ଅଳସ ମୁହୂର୍ତ୍ତରେ ଗୋଟିଏ ଗୋଟିଏ ପାଦ ପକାଉଛି। ଗ୍ରୀବାବନ୍ଧ ଘାଘୁଡ଼ିର ରୁଣୁଝୁଣୁ ସ୍ୱର ଶୁଣିବାକୁ କାନ ଡେରି ବେକ ହଲାଉଛି।

- କଳା ପଛକୁ ଥାଉ, ଆଗ ମନର ଅରମାନ ମେଣ୍ଟୁ।

ଘୋଡ଼ା ନଚାଉଥିବା ଆଉ ଜଣେ ଘୋଡ଼ା ଭିତରୁ ବାହାରି ଆସି ଢୋଲିଆ ଆଗରେ ପରସ୍ତେ ନାଚିଯିବ। - 'ଦେଖ୍ ଏଇ ନାଚକୁ ଦେଖି ବାଜା ବଜା।' ଢୋଲିଆ ନାଚକୁ ଦେଖି ସେଇ ତାଳ, ସେଇ ଲୟରେ ବାଜା ବଜାଇବ। ଯୋଡ଼ି ମହୁରୀ ତାକୁ ଅନୁସରଣ କରିବ। ଘୋଡ଼ାର ଉଦ୍ଦାମ ନୃତ୍ୟରେ ଗାଁ ଦାଣ୍ଡ ଦୁଲୁକି ଉଠିବ। କୋଉ ଗାଁରୁ

* ତାଳପତ୍ର ଛତା ଦେହରୁ ବାରବାସୀ ପତ୍ରର ତନ୍ତୁରେ ତିଆରି ଗୋଟିଏ ଦଉଡ଼ି ଝୁଲିଥାଏ। ଏଥିରୁ ଗୋଟିଏ ମାତ୍ର ସ୍ୱର ବାହାରେ ଟୁଁ-ଟୁଁ।

କେଜାଣି ଦୁଇଟା ବେତ ତିଆରି ଷଣ୍ଢ ଠାକୁରଙ୍କ ସହିତ ଆସନ୍ତି । ଶିଂଘରେ ଶିଂଘ ପକାଇ ଲଢ଼େଇ କରନ୍ତି । ପନ୍ଦର କୋଡ଼ିଏ ହାତ ପଛକୁ ଫେରି, ଆଡ଼ି ପତାଇ ଛିଡ଼ା ହୁଅନ୍ତି, ଦୌଡ଼ି ଦୌଡ଼ି ଆସି ମୁଣ୍ଡ ପକାନ୍ତି । ପଛପଟେ ଜଣେ ଲେଖାଏଁ ଷଣ୍ଢର ଲାଞ୍ଜକୁ ଟେକି ଧରିଥାନ୍ତି- ଲଢ଼େଇ ବେଳେ ଷଣ୍ଢ ଯେପରି ଲାଂଜ ଟେକେ । ଦେଖଣାହାରିଏ ରଡ଼ି ପକାନ୍ତି - ହୁର୍‌ର୍, ହୁରର୍ ।

ସଂକୀର୍ତ୍ତନ ପ୍ରେମୀଙ୍କ ପାଇଁ ଏ ମେଳନଟି ସ୍ୱର୍ଗ । ଠାକୁରଙ୍କ ସଂଖ୍ୟା ଅଳ୍ପ । ଲୋକଗହଳି କମ୍ । ଓଡ଼ିଶୀ କୀର୍ତ୍ତନର ସ୍ୱାଦ ଚାଖିବାକୁ ଏ ମେଳନଟି ପ୍ରଶସ୍ତ । ଓଡ଼ିଶୀ କୀର୍ତ୍ତନରେ ଗାୟକ ବାୟକ ବଳ କଷାକଷି ହୁଅନ୍ତି- ଝାଂଜ ଆଉ ଖୋଳର ପ୍ରତିଯୋଗିତା ଚାଲେ । ବାହାର ଗାଁର ବହୁ ସଂକୀର୍ତ୍ତନ ପ୍ରେମୀ ଆସି ଏହାକୁ ଉପଭୋଗ କରନ୍ତି । ସଂକୀର୍ତ୍ତନ ସରିବା ପରେ ଯାତ୍ରା । ପାଖାପାଖି ଆଉ କେଉଁ ମେଳନରେ ଯାତ୍ରା ହୁଏ ନାହିଁ । ତେଣୁ ଯାତ୍ରା ଦେଖିବା ପାଇଁ ଲୋକେ ଥାଟ ପଟଳ ଭାଂଗନ୍ତି । ଗାଁର ବୋହୂମାନେ ଯାତ୍ରା ଦେଖିଯା'ନ୍ତି ନାହିଁ । ସେମାନେ ରଜକୁ ଚାହିଁ ରହନ୍ତି । ଥିଏଟରକୁ ସମସ୍ତେ ଯିବେ । ନୂଆବୋହୂ ମାନେ ପରସ୍ପରକୁ ଦେଖିବେ । ଆଗ ଆଖିରେ ଆଖିରେ କଥାବାର୍ତ୍ତା ହେବେ । ତାପରେ ପାଖକୁ ଘୁଞ୍ଚି ଘୁଞ୍ଚି ଯାଇ ଓଢ଼ଣା ତଳୁ ତୁନୀ ତୁନୀ କଥାବାର୍ତ୍ତା ହେବେ । ପଛପଟୁ କିଏ ଜଣେ ଚୁମୁଟି ଦେବ । କହିବ- 'ଆଲୋ ଦେଖ୍ ଲୋ ତୋ ବର ବାହାରିଲାଣି' । ଅମାନିଆଁ ଆଖି ଆପଣାଛାଏଁ ଷ୍ଟେଜ୍ ଉପରକୁ ଚାଲିଯିବ । ନୂଆବୋହୂର କଇଁଫୁଲିଆ ମୁହଁରେ ଲେସି ହୋଇଯିବ ସୁଳାଏ ପାଟଳ ରଂଗ । ଓଢ଼ଣାଟିକୁ ଟାଣିଦେବ ଆଉ ଟିକିଏ ତଳକୁ ।

ପନ୍ଦରଦିନ ଛାଡ଼ି ବୈଶାଖ କୃଷ୍ଣ ପକ୍ଷ ଦ୍ୱିତୀୟାରେ କୁଂକର ମେଳନ । ଆମ ଅଂଚଳରେ ଏ ମେଳନର ଡାକ ଅଛି । କଳଘୋଡ଼ା ଆସନ୍ତି ଚାଳିଶ ହଳ । ତାଛଡ଼ା ଷଣ୍ଢ, ଚଇତି ଘୋଡ଼ା, ରାଜାରାଣୀ, ଅଷ୍ଟପଖୀ ଆସନ୍ତି ଅନେକ । ଜହ୍ନ ଉଇଁଲେ ରୋଷଣୀ ଆରମ୍ଭ ହୁଏ । ସରେ ତା'ପରଦିନ କଅଁଳ ଗାଧୁଆ ବେଳକୁ । ବାଣ ମରେ ପର୍ଯ୍ୟାପ୍ତ ।

ଅଭିଆଡ଼ୀ ଝିଅଙ୍କ ବ୍ୟତୀତ ଆମ ଗାଁର ଅନ୍ୟ କୌଣସି ସ୍ତ୍ରୀଲୋକ ଏ ମେଳନକୁ ଯାଆନ୍ତି ନାହିଁ । ପାଖାପାଖି ପଚାଶ ଖଣ୍ଡ ଗାଁର ଅଭିଆଡୀ ଝିଅଙ୍କ ପାଇଁ ଏ ମେଳନର ଆକର୍ଷଣ ଅଲଗା । ଆଗକୁ ରଜ ଆସୁଛି । କାହାର ସୁନାପାଣିଦିଆ ପାଦ ପାଇଁ ଲାଲ ଟକଟକ ଅଳତାଟିଏ ଦରକାର । କାହାର ବିଭାଘର ଲାଗିଛି । ଆଉ ଦିନ କେଇଟି ପରେ ଶାଶୁଘର ଯିବ । ପୁଣି ବାହାଘର ତ ଯୋଗର କଥା, କିଏ ଜାଣେ କୁଆଡୁ କିଛି ସ୍ୱର ଶବ୍ଦ ନଥିବ ହଠାତ୍ କାହାର ବାହାଘର ଠିକ୍ ହୋଇଯିବ । କାହାର ରବି ଶୁଦ୍ଧି ପଡ଼ିଲାଣି, ଗଣକ କହିଛି ଚଞ୍ଚଳ ପୁଆଣୀଘର କାମ ଉଠାଇ ଦେବାକୁ । ଏ ମେଳନରୁ ମନପସନ୍ଦର କାଚ ଗ୍ଲାସଟିଏ, ପାନଥାଳିଆଟିଏ, ସିନ୍ଦୁର ଫରୁଆ, ବାସ୍ନା ତେଲ,

ଦର୍ପଣଟିଏ ନ କିଣିଲେ ଆଉ ମିଳିବ ନାହିଁ । ହଁ, ପିପିଲି ହାଟରୁ ମରଦ କଣେ ଯାଇ ହୁଏତ କିଣି ଆଣିବ କିନ୍ତୁ ସେ କଣ ନିଜ ମନପସନ୍ଦର ହେବ ? ଘର ପାଇଟି ସାରି, ଶାଶୂ ଶଶୁରଙ୍କ ସେବା କରିସାରି ଶୋଇବା ଘରକୁ ଆସିବାବେଳକୁ ଦେହ, ଝାଳଗନ୍ଧ କରୁଥିବ । ବର ପାଖକୁ କ'ଣ ଗନ୍ଧିଆ ଦେହ ନେଇ ଯିବ ? ଛି, ଛି । ଦେହରେ ଟିକିଏ ଫୁଲରି ତେଲ ମାରିଦେଲେ ଭଲ ଲାଗିବ । ଯାକୁ ତ ଆଉ କୋଉ ମରଦ ହାତରେ କିଣି ହେବ ନାହିଁ । କ'ଣ ସେ ଭାବିବ ?

ଝିଅ ମନକଥା ମା କାଣେ । ଝିଅ ଆଣିଛି ଶାଶୁଘର ନେବ ବୋଲି । ସାତ ସନ୍ଧିରେ ନେଇ ରଖିବ । ଅସଲ ବେଳକୁ ବାହାର କରି ଝିଅ ଟ୍ରଙ୍କରେ ଲୁଚାଇ ରଖିଦେବ ।

ଏଇ ଅଭିଆଡ଼ୀ ବେଳେ ଅଳସ ଦ୍ୱିପ୍ରହରଟା ଆଦୌ କଟେନି । ହମିଦ୍ ଖାଁଙ୍କର ଖଣ୍ଡେ ଦିଖଣ୍ଡ ବହି କିମ୍ବା ସୀତାଚୋରୀ, ଦାନବୀର ହରିଶ୍ଚନ୍ଦ୍ର, ଖୁଇଣା ସୁନ୍ଦରୀ ନ ନେଲେ ନଚଳେ । ସୁବିଧା ହେଲେ ସାଂଗ ସାଥିଙ୍କୁ ଲୁଚାଇ ଖଣ୍ଡିଏ କାନ୍ଦଣା ଲହରୀ କିମ୍ବା ତାରାଦେଇ କାନ୍ଦ ନେବ । ଆଖି ଲୁହରେ ମୁହଁ ଧୋଇ ବହି ପଢୁ ପଢୁ ଦ୍ୱିପ୍ରହରଟା କଟିଯିବ ।

ପାଖ ଗାଁ ହରିଅନ୍ତା । ଠାକୁରାଣୀଙ୍କର ଭଲ ସଂପତ୍ତି । ରଜର ଅନେକ ଆଗରୁ, ପ୍ରାୟ ଜ୍ୟୈଷ୍ଠ ମାସ ଆରମ୍ଭରୁ ଏଠାରେ ବାଦୀ ପାଲା ହୁଏ । ନାମୀ, ଦାମୀ ପାଲାକାର ମାନେ ଆସନ୍ତି । ଆମ ଗାଁରୁ ଖୁବ୍ କମ୍ ଲୋକ ଯାନ୍ତି ପାଲା ଦେଖିବାକୁ । ସ୍ତ୍ରୀଲୋକ ମାନଙ୍କ ପ୍ରଶ୍ନ ଉଠେ ନାହିଁ । ପାଖ ଗାଁ ବିନାୟକପୁର, ତିଗିରିଆରୁ ଆସନ୍ତି ବ୍ରାହ୍ମଣ ଗୋସାଇଁ ମାନେ । ପାଲାବାଲାଙ୍କୁ ପ୍ରଶ୍ନ ପଚାରନ୍ତି- ପାଣ୍ଡିତ୍ୟ ସୁଲଭ ହସ ହସି ଉତ୍ତରକୁ ପ୍ରତ୍ୟାଖ୍ୟାନ କରନ୍ତି- ହେଲା ନାହିଁ, ହେଲା ନାହିଁ ବୋଲି କହନ୍ତି । ଗାୟକ ଯେତେବେଳେ ହାତଯୋଡ଼ି ମୁଣ୍ଡ ନୁଆଁଇ ଠିକ୍ ଉତ୍ତର ଜାଣିବାକୁ ଅପେକ୍ଷା କରେ ସେତେବେଳେ ବ୍ରାହ୍ମଣ ଗୋସାଇଁ କହନ୍ତି- 'ତୁମକୁ ଯେତିକି ଜଣାଅଛି କହିଲ । ଚାଲ, ଆଗକୁ ଚାଲ ।' ଗାୟକ ପୁଣି ସୂତାର ଖିଅ ଧରି ଚାଲେ ।

ମୋର ମନେଅଛି, ଥରେ ଜଣେ ଗାୟକ ଭାଗବତରୁ କ'ଣ ପଦେ ବୋଲିଲେ । ବ୍ରାହ୍ମଣ ଗୋସାଇଁ ଡ଼ାକିଲେ- 'ଓ ଗାୟକେ !'

ଗାୟକ ଅଟକି ଗଲେ । ବୈଷ୍ଣବ ସୁଲଭ ନମ୍ରତାରେ ଯେପରି ଭାଙ୍ଗି ପଡ଼ିଲେ । ଆଉ ଟିକକ ପରେ ମାଟିରେ ଲେସି ହୋଇଯିବେ ପରା । ହାତଯୋଡ଼ି, ମୁଣ୍ଡ ନୁଆଁଇ ପ୍ରଶ୍ନକୁ ଅପେକ୍ଷା କଲେ । ବ୍ରାହ୍ମଣ ଗୋସାଇଁ ପଚାରିଲେ- 'ଭାଗବତ ପଢୁଚ ପରା, କୁହ ଭାଗବତରେ କାହିଁକି ରାଧାଙ୍କ ନାଁ ନାହିଁ ।'

ପାଳିଆ ଛିଗୁଲାଇଲା- 'ଆଏ ତୁମକୁ ଯଦି ଉତ୍ତର ଜଣା ନାହିଁ ସିଧା କହିଦିଅ । ତମ ପରେ ଯୋଉ ଗାହାଣ ଉଠିବେ ସେ ଉତ୍ତର ଦେବେ ।'

ଗାୟକ ହସିଲେ । ହସିଲେ କି ପ୍ରତିପକ୍ଷ ଗାୟକକୁ ଉପହାସ କଲେ ଜାଣି ହେଲା ନାହିଁ । ଗାୟକ ଚଉଦ ଅକ୍ଷରୀ ଗୀତରେ ଉତ୍ତର ଦେଲେ- 'ପରୀକ୍ଷିତ ରାଜାଙ୍କୁ ସାପ କାମୁଡ଼ି ଥିଲା ବୋଲି ଶୁକ ମୁନି ତାଙ୍କୁ ଭାଗବତ ଶୁଣାଉଥିଲେ । ସାପକାମୁଡ଼ା ରୋଗୀ କାନରେ ସ୍ତ୍ରୀ ଲୋକର ନାଁ ପଡ଼ିଲେ ବିଷ ଝଡ଼େ ନାହିଁ । ସେଥିପାଇଁ ଭାଗବତରେ ରାଧାଙ୍କ ନାଁ ନାହିଁ ।' ଉତ୍ତର ଶେଷ ହେଉ ହେଉ ବାୟକ ଅର୍ଦ୍ଧାଳୁଆ ମୃଦଙ୍ଗ ପିଟି ଦେଇଗଲା, ବିଜୟ ଉଲ୍ଲାସରେ । ପାଳିଆମାନେ ଝାଂଜ ପିଟିଲେ । ସମବେତ କଣ୍ଠରୁ ଶୁଭିଲା- ହରିବୋଲ, ହରିବୋଲ । ସ୍ତ୍ରୀ ଲୋକମାନେ ନିଜ ନିଜ ଭିତରେ କଥାବାର୍ତ୍ତା ହେଉଥିଲେ, ହରିବୋଲ ଧ୍ୱନି ଶୁଣି ସେମାନେ କିଛି ବୁଝି ନ ପାରି ହୁଳହୁଳି ଆରମ୍ଭ କରିଦେଲେ । ଏ ଗହଳି ଭିତରେ ବ୍ରାହ୍ମଣ ଗୋସାଇଁ କ'ଣ କହିବେ କହିବେ ହୋଇ ରହିଗଲେ ।

ହରିଅନ୍ତାଠାରୁ ଭାର୍ଗବୀ ନଈ ବନ୍ଧେ ବନ୍ଧେ ଅଳ୍ପବାଟ ଗଲେ ନଈ ସେ ପଟେ ହରିପୁର । ଭଉଁରୀ ଦିନ ସେ ଗାଁରେ ନାଗା ନାଚ ହୁଏ । ବିରାଟ ଗାଁ ଦାଣ୍ଡ ଗୋଟିଏ ରଂଗ ମଂଚରେ ପରିଣତ ହୋଇଯାଏ । ୨୫/୩୦ ଜଣ ନାଗା ନାଚନ୍ତି । ଯୋଡ଼ି ମହୁରୀ, ଡେମ୍ଫ ନାଗରା ଓ ନାଗା ମାନଙ୍କର ଦର୍ପିତ ପାହୁଲରେ ଗାଁ ଦାଣ୍ଡ ଉଚ୍ଛୁଳି ପଡ଼େ । ପୁରୀ ଜିଲାର ସବୁ ବ୍ରାହ୍ମଣ ଶାସନରେ ନାଗା ନାଚର ଆଦର । ଏହାର ବେଶ ଅଲଗା, ନାଚ ଶୈଳୀ ଅଲଗା । ନାଗାର ପଛପଟେ ଥାଏ ଧେନୁ* । ଧେନୁ ଦେହରେ ବନ୍ଧା ହୁଏ ଫଡ଼କା (ପତାକା) ମୟୂର ପୁଛ, ତୀର, ଚକ୍ର ଏବଂ ତ୍ରିଶୂଳ । ମୁଣ୍ଡରେ ଜଟା ଭିଡ଼ା ହୁଏ, ଜଟା ଉପରେ ସପୁରିଆ (ଟୋପି ଭଳି) । ସପୁରିଆ ଉପରେ ଉତ୍‌ଫଣ ସାପ ଭଳି ଗୋଟିଏ କରି ଫୁଲ । ଦେଖିବାକୁ ସପ୍ତଫେଣୀ ଶିଙ୍ଖୁ ଫୁଲ ପରି । ସପୁରିଆ ଉପରେ ସ୍ୱତନ୍ତ୍ର ଭାବେ ତିଆରି 'ପାବାଜ' ଝୁଲେ । ଗାଲରେ ବିଶାଳ 'ଗାଲମୋଚା', ବାହୁରେ 'ଏରା' ହାତରେ 'ଓରମାଳ' ଏବଂ କଚଟିରେ 'ହତା' ଝୁଲେ । ବେକରେ ପିନ୍ଧେ ରୁଦ୍ରାକ୍ଷ ମାଳି, ଅଣ୍ଟାରେ ଝୁଲାଏ କଟାରୀ, ବାଙ୍କ ଛୁରୀ ଏବଂ ଗଂଜକ ଦାନୀ । ଛାତିରେ ବାଘ ଛାଲ ଓ ପଇତା । ପିଠିରେ ଏବଂ ଜଂଘରେ ଡାଲ । ବୀର ବାଦ୍ୟର ତାଳେ ତାଳେ ପାହୁଲ ପକାଇ ନାଗା ମାନେ ନୃତ୍ୟ କରନ୍ତି ଗାଁର ଏମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ । ନାଗା ମାନଙ୍କ ସହିତ ଜଣେ ପର୍ଶୁରାମ ବାହାରନ୍ତି । ମନେହୁଏ, ପୃଥିବୀକୁ ୨୧ବାର ନିକ୍ଷତ୍ରିୟ କରିଥିବା ବ୍ରାହ୍ମଣ କୁଳଜ ପର୍ଶୁରାମଙ୍କ ପବିତ୍ର ସ୍ମୃତିର ଯେ ଏକ ଉଦ୍‌ବୋଧନୀ ।

ଆମ ଗାଁର ବେହେରା ସାହିକୁ ଲାଗି ମାଟିଆ ପଡ଼ା । ଦୋଳ ପୂର୍ଣ୍ଣିମା ପୂର୍ବ ରାତିରେ ବେହେରା ସଂପ୍ରଦାୟର ଲୋକେ ହଳଦିଆ ଲୁଗା ଉପରେ ନାଲି ଗାମୁଛା

* ଅର୍ଦ୍ଧଚନ୍ଦ୍ର ଆକାରରେ ବାଉଁଶ ପାତରେ ତିଆରି ଟାହିଆ- ମଝି ପିଠି ଠାରୁ ଉଭୟ ଦିଗକୁ ଓ ଉପରକୁ ପ୍ରାୟ ଅଢ଼େଇ ହାତ ଲମ୍ବ ।

ବେଢ଼ଣ କରି, ବେଣୁ ସିଂଘା ବଜାଇ ଅଣ୍ଟାରେ ଘାଘୁଡ଼ି ବାନ୍ଧି, ନାଚି ନାଚି ଯମୁନା ନଈକୁ ଜଳତୋଳି ଯାଆନ୍ତି ଆମ ଗାଁ ଭିତର ଦେଇ। ସମବେତ କଣ୍ଠରେ ବୋଲନ୍ତି।

ଶୁଭେ ଶଙ୍ଖଧ୍ୱନି ଫିଟେ କବାଟ
ଗଲେ ଗୋପୀମାନେ ମଥୁରା ଘାଟ।
କାହିଁ ପାଇଁ କାହ୍ନୁ ଓଗାଳୁ ବାଟ
କଂସ ରାଇଜରେ କେ ଦେବ ଘାଟ
କାହ୍ନୁହେ
ଖଳ ଶାଶୁ ମୋର ଖଳ ନଣନ୍ଦ
କ୍ଷଣେ ନ ଦେଖିଲେ କରିବେ ଦ୍ୱନ୍ଦ
କାହ୍ନୁହେ

ଗୀତର ତାଳେ ତାଳେ ଆଗକୁ ଯାଆନ୍ତି ପୁଣି ପଛକୁ ଫେରନ୍ତି। ସତେ ଅବା ଧୋବ ଫର ଫର କହ୍ନ ଆଲୁଅ ତଳେ ଢେଉ ଉପରେ ବିଚିତ୍ର ବର୍ଣ୍ଣର ପକ୍ଷୀ କେଇଟି ଦୋଳି ଖେଳୁଛନ୍ତି। ନଈ ତ ପାଖରେ ନାହିଁ। କେତକୀ ନାଳୀ ବୋଲି ଗୋଟିଏ ଛୋଟିଆ ପୋଖରୀ ସେମାନଙ୍କ କଳ୍ପିତ ଯମୁନା ନଈ। ସେଇଠୁ ଜଳ ତୋଳନ୍ତି- ପରସ୍ପରକୁ ପାଣି ଫୋପାଡ଼ି ତମାଳି କରନ୍ତି-

ଆମ୍ଭେ ଚାରି ସଖୀ ଗାଧୋଇ ବାହାର
ଚାରିକରେ କୁମ୍ଭ ନୂଆ
ଆଣ୍ଟୁକ ପାଣିରେ କୁମ୍ଭ
ନ ବୁଡ଼ଇ ଡେଗମେଲେ ପାଣିକୁଆ।

ବୈଷ୍ଣବୀୟ ଗୋପୀଭାବଟି କେତେବେଳେ ସଂସ୍କୃତି ଭିତରକୁ ପଶି ଆସିଛି। କିନ୍ତୁ ନଉଡ଼ି ଖେଳର ପୁରୁଷକାର ନିକଟରେ ଏଇ ଗୋପୀ ଭାବଟି ଦୟନୀୟ ଭାବେ ବିଡ଼ମ୍ବିତ ହୁଏ। ହୋଲିଦିନ ସେମାନେ ଆସନ୍ତି ନଉଡ଼ି ଖେଳିବାକୁ। ବୀରବାଦ୍ୟ ତାଳେ ତାଳେ ନଉଡ଼ି ଖେଳ ହୁଏ।

ବିଛା ଲୋ ଭାଇ ଚିତା, ହେଟ ବାଡ଼ି, ପାଠ ବାଡ଼ି
ଡାଳ ବାଡ଼ି ଶିକ ବାଡ଼ି ସମ୍ଭାଳେ
ବିଛାବାଡ଼ି ଜଗ୍।
ହେଟ ନଉଡ଼ି, ହେଟ ଭାଙ୍ଗି ପାଠ ନଉଡ଼ି
ପକା ବାଁ କାନ ଉଡ଼ି।
କାନ୍ଦିଲା କଳ ନଉଡ଼ି, ଧାଡ଼ିଲା ଶିକ।

ଜଳପ୍ରପାତର ଗଦ୍‌ଗଦ୍ ଶବ୍ଦ ଭଳି ପହଲି ତୀବ୍ର ଗତିରେ ଆକ୍ରମଣକାରୀର ମୁହଁରୁ ଛୁଟେ। ପ୍ରତିରୋଧକାରୀ ସଙ୍କେତ ବୁଝି, ହୁଁକାର ତୋଳି ପ୍ରତିରୋଧ କରେ। ଏଥରକ ପ୍ରତିରୋଧକାରୀର ପାଳି, ସେ ହୁଙ୍କାର ତୋଳି ଆକ୍ରମଣ କରେ-

ଛାଟେଣି ଛାଟ
ଆଡୁଆ ଛାଟ କୁହୁକ ବାଟେ
ଉଡ଼ିଗଲା କାଉ କଗଇ ଘାଟେ
ପାଠ ଘା ପଟେ- ବିଛା ଘା ପଟେ
ଶିକ ସମ୍ଭାଳି ବିଛା ଜଗ୍
ଶିକ ଦୋଷରି ପାଠ ଏ
ବିଛାଲୋ ଭାଇ ଚିତା।
ଛଅକ ସମ୍ଭାଳେ ଆଣ୍ଠୁ ପକା।

ନଉଡ଼ି ଦେହରେ ନଉଡ଼ି ବାଜେ। ବଳିଷ୍ଠ ଦେହର ମାଂସପେଶୀ ସବୁ ଉପୁଚି ଦିଶେ। ତେଲ ମଖା ନଉଡ଼ି ଗୁଡ଼ିକ ରଣିଫୁଲ ପରି ଜହ୍ନ ଆଲୁଅରେ ଝଲସି ଉଠେ। ନଉଡ଼ି ଖେଳ ମଝିରେ ଖେଳାଳି ମାନେ ଢୋଲିଆ ସହିତ ରଂଗ ରହସ୍ୟ କରନ୍ତି-

-ଢୋଲିଆ ଭାଇରେ ଢୋଲିଆ ଭାଇ
- ତୁ ଢୋଲ କି ରଙ୍ଗେ ବଜାଉ
ହାତ ଗୋଡ଼ ତୋର କୁମ୍ଭିର ନେଉ
ମାଦଳ ଗଡ଼ ଗଡ଼ାଉ।

ଢୋଲିଆ ବି ନାଗାନାଚ ଭଂଗୀରେ ତାଙ୍କ ସହିତ ନାଚିଯାଏ ପରସ୍ତେ।

ଆରୁହାର ନୂଆ ଯାତ୍ରାଦଳ ଆସନ୍ତି ଆମଗାଁକୁ ଅଭିନୟ କରିବାକୁ ବାପାଙ୍କ ଖାତିର୍‌ରେ। ପ୍ରତିଟି ନୂଆ ବହିର ଶୁଭାରମ୍ଭ ହୁଏ ଆମ ଦାଣ୍ଡରେ- ବିନା ପାରିଶ୍ରମିକରେ। ପାଉଡ଼ର ଖର୍ଚ୍ଚ ବାବଦରେ ପାଞ୍ଚ ଟଙ୍କା ଯାଚି ଗୁଞ୍ଜି ଦିଆଯାଏ। ବିଶି ଭାଇ ଲାଇଟ୍ ଦିଅନ୍ତି। କେଜାଣି କାହିଁକି ଆମ ଗାଁରେ ଯାତ୍ରାର ଆଦର ନାହିଁ। ଯାତ୍ରା ପରଦିନ ଆମ ଗାଁର ଲୋକେ ଟାହୁଲି ଟାପରା କରନ୍ତି-

ଆରୁହା ପାଟି
ବିଶି ଲାଇଟି
ପ୍ରେସିଡେଣ୍ଟଙ୍କର ବଡ଼ ପେଟଟି
ଦେଖି ମୂର୍ଚ୍ଛନା ଯାଉଛି ଫାଟି

କେତେ କେତେ କଥା ଲୋକେ ଭୁଲିଗଲେଣି କିନ୍ତୁ ଏଇ ଅଲିଖିତ ଅପାଶୋରା ଗୀତ ପଦକ କେବଳ ଆମ ଗାଁ ନୁହେଁ ପାଖାପାଖି ଗାଁର ସବୁରି ତୁଣ୍ଡରେ ବସା ବାନ୍ଧିଛି।

ଗାଁ ଗହଳିରେ ଜନପଦ କବିମାନେ ଛୋଟ ଛୋଟ କଥାକୁ ନେଇ ବ୍ୟଙ୍ଗ କବିତା ରଚନା କରନ୍ତି-କଟାକ୍ଷ କରନ୍ତି। ତାଙ୍କ କଥାକୁ କେହି ଧରନ୍ତି ନାହିଁ, ନିର୍ଦ୍ଦୋଷ ପରିହାସ ରୂପେ ଗ୍ରହଣ କରି ନିଅନ୍ତି। ଆମ ଗାଁରେ ସେହିପରି ଜଣେ ଜନପଦ କବି ଥିଲେ। ତାଙ୍କର ପ୍ରକୃତ ନାଁ କ'ଣ କେଜାଣି ତାଙ୍କୁ ସମସ୍ତେ ଗଦେଇ ବାବାଜୀ ବୋଲି ଜାଣନ୍ତି। ସେ ବ୍ୟଙ୍ଗ କରି ଗାଁର ସମସ୍ତଙ୍କ ନାଁରେ ଗୀତ ରଚନା କରିଥିଲେ। ଏ ଗୀତଟି ତାଙ୍କରି ଗୋଟିଏ ପଦ। ସମୟେ ସମୟେ ତାଙ୍କରି ଗୀତରୁ ଉଦ୍ଧାର କରି ଗାଁରେ ଥଟା ତାମସା ଚାଲେ। ମନୋରଂଜନର ଗୋଟିଏ ସୁନ୍ଦର ମାଧ୍ୟମ ଥିଲା ଏଇ ବ୍ୟଙ୍ଗ କବିତା। କାଶୀ ଭାଇ ସେଥିରୁ କେଇପଦ ମନେ ରଖିଛନ୍ତି।

ବିକେଇ ନାହାକ ମୁଣ୍ଡରେ ଜଟ
କୁଣିଆ ପିନ୍ଧଇ ଦକ୍ଷିଣୀ ପାଟ
ଭିକ ମାଗି ଖାଏ ଭିକାରି ଭାଇ
ଅଫିମ ନ ହେଲେ ଚଳଇ ନାହିଁ।
ଉଦୁ ଉଦୁମା ତାଳ ଗୋଟମା
ତା'ପରେ ପଡ଼ିବ ବଇଷମା କୋଦମା।

ଆମେ ପିଲାଦିନେ ବୈଷ୍ଣବ ଅକାଙ୍କୁ ବଇଷମା କୋଦମା କହି ଚିଢ଼ାଉ। ସେ ଖୁବ୍ ରାଗନ୍ତି। ଆମକୁ ଟେକା ପକାନ୍ତି। କିନ୍ତୁ ଏଇ ଗୀତକୁ ଆଧାର କରି ଆମେ ତାଙ୍କୁ ଚିଢାଉ ବୋଲି ମୋର ଧାରଣା ନ ଥିଲା।

ବେଳେବେଳେ ଶାଳଜଂଗର ରଘୁ ମଉସା ତାଙ୍କର ଯାତ୍ରା ଦଳ ଧରି ଅନାହୂତ ଆସି ଯାତ୍ରା କରନ୍ତି। ସେ ଜଣେ ଦକ୍ଷ ନିର୍ଦ୍ଦେଶକ। ଚାରିଆଡ଼େ ତାଙ୍କର ନାଁ ଡାକ। ତଥାପି ତାଙ୍କ ନିର୍ଦ୍ଦେଶିତ ବେହୁଲା ସୁନ୍ଦରୀ, କାପାଳି କୁଣ୍ଡଳା, କାଳକେତୁ ଫୁଲରା ଭଳି ମହାନ୍ କୃତି ଗୁଡ଼ିକ ଆମ ଗାଁର ଦର୍ଶକମାନଙ୍କୁ ଆକୃଷ୍ଟ କରିପାରେ ନାହିଁ।

ପୁରୀରୁ ଚନ୍ଦନ ଆଉ ଝୁଲଣ ଲେଉଟା ଗୋଟିପୁଅ ଦଳ ବେଳେବେଳେ ଆମ ଗାଁକୁ ପଶି ଆସନ୍ତି। ଯାତ୍ରା ତୁଳନାରେ ଗୋଟିପୁଅ ନାଚରେ ଲୋକଙ୍କର ରୁଚି ଅଧିକ। ବୋଧହୁଏ ଏହାର ସଂଗୀତ ପାଇଁ। ଲୋକେ ବି ଅନେକ ସମୟରେ ଏ ଗୀତ ଗାଅ, ସେ ଗୀତ ଗାଅ ବୋଲି ବରାଦ କରନ୍ତି। ବେଶି ବରାଦ ହୁଏ 'ଭ' ଚମ୍ପୁ- 'ଭଂଗୀ ଚାହାଁ ଭୃରୁ ନୀଳ ଭୁଜଙ୍ଗୀ ଭ୍ରମର ଜୀବସଂଗି' ଏବଂ 'କ୍ଷ' ଚମ୍ପୁ- 'କ୍ଷମାନୁକମ୍ପାଧର ହେ।'

ସବୁ ଦର୍ଶକ ଅଣ୍ଟାରେ ଆଠଣିଟିଏ ବା ଚାରଣିଟିଏ ଖୋସି ନାଚ ଦେଖିବାକୁ ଆସନ୍ତି। ନାଚ ସରିବା ପୂର୍ବରୁ ଗୋଟିପୁଅ ମାନେ ମଂଚ ଛାଡ଼ି ଦର୍ଶକମାନଙ୍କ ଭିତରେ ପଶନ୍ତି। ଥାଳି ଧରି ନାଚି ଗାଇ ମାଗଣ କରନ୍ତି। ଗୋଟିପୁଅ ନାଚର ଏ ଗୋଟିଏ ପରମ୍ପରା। ଯଦି କାହା ନିକଟରେ ପଇସା ନଥାଏ ତେବେ ସେ ମାଗଣ ଥାଳିରୁ ଗୋଟିଏ

ମୁଦ୍ରା ଉଠାଇ ସେଇ ଥାଳିରେ ପୁଣି ପକାଇ ଦିଏ । ଅର୍ଥାତ୍ କାଲି ସକାଳୁ ଏତିକି ପଇସା ଦେବି । ଗୋଟିପୁଅ ନାଚ ସରେ, ବିଦାୟ ସଂଗୀତରେ-

ବଂଧୁ ହେ ଆଜି ଏତିକି ହେଉ
ଏ ଅନୁବନ୍ଧନ କାଳକୁ ଥାଉ
ଅଥବା
ସରିଯାଉଛି ରେ ଏହିଠାରୁ ମନୋରଥ ।

ବିଚ୍ଛେଦ ବିଧୁର ରାଗିଣୀଟି ମନକୁ ଛୁଇଁଯାଏ ।

ଦାଣ୍ଡକାଠିଆ ଦଳ ବେଳେବେଳେ ଆସନ୍ତି ପୁଣି ଚୈତ୍ର ପୂର୍ଣ୍ଣିମାରେ ଚଇତି ଘୋଡ଼ା ସହିତ ରାଉତ ରାଉତାଣୀ । ଗୀତ ବୋଲନ୍ତି- ଘୋଡ଼ା ନଚାନ୍ତି । ବେଳେବେଳେ ଗାଁ ଦାଣ୍ଡରେ କେଳା କେଳୁଣୀ ନାଚ ହୁଏ । ଏମାନଙ୍କ ପାଇଁ ଗୀତ ଲେଖନ୍ତି ରାଜସର ଜନପଦ କବି ଆଦିକନ୍ଦ ନାୟକ । କୌଣସି କାରଣରୁ କେଳା କେଳୁଣୀ ମଧ୍ୟରେ ଝଗଡ଼ା ହୁଏ । କେଳା, କେଳୁଣୀକୁ ଛାଡ଼ି ଚାଲିଯାଏ । କେଳୁଣୀ ଗାଁ ଗାଁ ବୁଲି ପୁରୀରେ ପହଞ୍ଚେ । କେଳା ପହଞ୍ଚେ କଲିକତାରେ । କେଳା ପୁରୀ ଫେରେ । ଗୁଣ୍ଡିଚା ଦ୍ୱିତୀୟା ଦିନ ଦୁହିଁଙ୍କର ଭେଟ ହୁଏ ଶ୍ରୀକ୍ଷେତ୍ରରେ । କେଳୁଣୀ କେଉଁ କେଉଁ ଗାଁ ବୁଲିଛି ବଖାଣି ବସେ । ଗୋଟିଏ ଦୁଇଟି ପଦ ମୋର ମନେଅଛି ।

ସେଠାରେ ରହିଲି ରାତ୍ରି-ପ୍ରଭାତରୁ ଦାନ୍ତ ପତର ଘଷି,
ଯାଉଥିଲି କେଳା ଗୁଣ ଘୋଷି
ବାନାମ୍ବର ବେବର୍ତ୍ତା ଡାକି
ଚୁଡ଼ା ଘଷାରୁ ଦେଲେ ସେ କିଛି
ବାନାମ୍ବର ବେବର୍ତ୍ତା ଡାକି ।
ସେଠାରୁ ଗଲି ଦରଡ଼ା
ବାଟେ ଯାଉ ଖାଇଲି କାନ ମୋଡ଼ା
ମୋର କରମ ଏଡ଼ିକି ପୋଡ଼ା
ହଜିଗଲା ନାକ ନୁତୁକ ।
ଦରଡ଼ା ଗାଁରେ ମିଳିଲି
ସୁବଳ ବିଶ୍ୱାଳେ ଅଳି କଲି
ଦେଲେ ମୋତେ ଖାଇବା ପାଇଁ
ସଜ ପଖାଳରେ ସଜ ଦହି
ନୂଆ ହାଣ୍ଡିଟିରେ ପୁରାଇ ।

ସେଦିନ ହୋଇଛି ହାଟ*
ପୁରୀ ଯାତ୍ରୀ ଲାଗି ନ ମିଳେ ବାଟ
ଯାତ୍ରୀ ମାରୁ ଥାଆନ୍ତି କୁହାଟ
ଜଗନ୍ନାଥ ଭଲେ ବିରାଜେ
ତାଙ୍କ କଥାରୁ ପଦେ ନ ବୁଝେ
ଜଗନ୍ନାଥ ଭଲେ ବିରାଜେ।

ବାନାମ୍ବର ବେବର୍ତ୍ତା ଆମ ଗାଁର। ଦରଡ଼ା ଆମ ପାଖ ଗାଁ। ସଂଗଳାଇ ଠାରୁ ପୁରୀ ଯାଏଁ ଯେତେ ଗାଁ, ଯେତେ ମୁଖିଆ ଲୋକ ସେମାନଙ୍କ ନାଁ ଏଇ ଗୀତରେ ଥାଏ। ସେଥିପାଇଁ ଗୀତଟି ଖୁବ୍ ଆପଣାର ଲାଗେ। ଗୀତର ମନମତାଣିଆ ସ୍ୱର ମା କଣ୍ଠର ଗୀତ ଭଳି ଘଡ଼ିକେ ମନେ ରହେ। ଗୀତ ବୋଲିଲେ ମନ ନାଚେ- ଆପେ ନାଚିଲା ଭଳି ଲାଗେ।

ଦିନବେଳେ ଆସନ୍ତି ସଖୀନାଟ କେଳା। ଗୋଟିଏ ହାତରେ କଣ୍ଢେଇ, ଆର ହାତରେ ଡୋଲକ। ଆଙ୍ଗୁଠି ସାହାଯ୍ୟରେ କଣ୍ଢେଇର ହାତ ଦୁଇଟିକୁ ଉପର ତଳ କରି ଗୋଟିଏ ହାତରେ କଣ୍ଢେଇ ନଚାଏ ଅନ୍ୟ ହାତରେ ଡୋଲକ ବଜାଇ ଗୀତ ଗାଏ-

ବାଟ ଛାଡ଼ ହଟିଆ ଯିବି ପାଣିକି
ଶାଶୁ ନଣନ୍ଦ କି କହିବେ ଏଣିକି।

ସଖୀ ନାଟ ଆସିଲେ ପିଲାଙ୍କର ଆନନ୍ଦ କହିଲେ ନ ସରେ।

ନିଛାଟିଆ ଉଦୁଉଦିଆ ଦ୍ୱିପ୍ରହରେ ମା' ମାନେ ଯେତେବେଳେ ଅମାନିଆ ପିଲାମାନଙ୍କୁ କୋଳରେ ଜାବୁଡ଼ି ଧରି, ମଶାଣି ପଦାରେ ବାରହାତ ଲମ୍ବର ବାଳ ମୁକୁଳା କରି ବସିଥିବା ପିତାଶୁଣୀ କଥା କହି ଶୁଆଇ ପକାଇବାକୁ ଚେଷ୍ଟା କରନ୍ତି ସେତିକିବେଳେ କାହୁଁଥାଏ ଗାଁ ତୋଟା ଭିତରୁ ଶୁଭେ ଧୁଡୁକି ଗୀତ-

ମୋର ନାମ ରାଧା ବୋଲି
ଶ୍ୟାମ ଆଗେ କିଏ କହି ଦେଲାରେ।

ଗୀତ, ବାଦ୍ୟ ଏବଂ ଘୁଂଘୁରର ଐକତାନ ପହଁରି ଯାଏ ଗାଁ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ। ମା କୋଳ ଛାଡ଼ି ପିଲାଏ ଧାଆଁନ୍ତି ଦାଣ୍ଡକୁ। ପିଲା ପଛରେ ଧାଇଁ ଯାଉଥିବା ମା ଏରୁଣ୍ଡି ବନ୍ଧ ପାଖରେ ଘଡ଼ିଏ ଅଟକି ଯାଏ ଗୀତ ଶୁଣିବା ପାଇଁ। କେଳା ସାଥିରେ ଆସେ ତା'ର ସ୍ତ୍ରୀ- ଚିତାକୁଟା କେଳୁଣୀ। ବାରିପଟେ ବୁଲି ବୁଲି ଝୁମୁକା ବିକେ- ଚିତା କୁଟାଇବାକୁ ଡାକେ-

---

* ପିପିଲି ହାଟ

ବକ୍ଷସ୍ଥଳେ କୁଟିଦେବି ବଉଳଗୁ ମାଳେ
କାନ୍ତକୋଳେ କେଳିପୁରେ ରତ୍ନ ପଲଙ୍କରେ
ଦେଖୁଥିବୁ
ଯେତେବେଳେ ମନେ ପକାଇବୁ।

ଏ ଗୀତ ପଦକ କଳ୍ପିତ ସ୍ୱାମୀ ସଂଗସୁଖ ବିଭୋରତାରେ ଚିତାକୁଟାର ନିପୀଡ଼ନ ଭୁଲିଯିବାର ମହୌଷଧିଟିଏ ହେବ ପରା !

କେଡ଼େ ସରସ !

ପୁଣି କେତେ ସୁନ୍ଦର ଏ ଗୀତ ପଦିକ !

ଗୋଟିଏ କେଉଁ ପର୍ବରେ ପିପିଲିର ମୁସଲମାନ ମାନେ ଆସନ୍ତି ଖଣ୍ଡାଖେଳ ଦେଖାଇବା ପାଇଁ। ମୋଗଲ ଅମଳରେ କଟକର ନାଏବ୍ ନାଜିମ୍‌ଙ୍କର ଗୋଟିଏ ଦୁର୍ଗ ପିପିଲିରେ ଥିଲା। ଏ ସେଇ ବିରକ୍ତିକର ଇତିହାସର ଗୋଟିଏ ମଳିନ ସ୍ମାରକୀ ହୋଇପାରେ। ଏମାନେ ଆସିଲେ ସ୍ତ୍ରୀ ପିଲାମାନେ ଘରୁ ବାହାରନ୍ତି ନାହିଁ।

ଦୁର୍ଗା ଅଷ୍ଟମୀ ଦିନ ଆମ ଦାଣ୍ଡ ପିଣ୍ଡାରେ ବୈଠକୀ ପାଲା ହୁଏ। ସତ୍ୟପୀରଙ୍କୁ ଘର ଭିତର ମନା। ସେଥିପାଇଁ ଦାଣ୍ଡ ବାରଣ୍ଡାରେ ପୂଜା ହୁଏ। ଗାଁର ସମସ୍ତେ ଆସନ୍ତି। ଭେଣ୍ଟିଆମାନେ ପାଳି ଧରନ୍ତି। ୧୯୩୯ରୁ ଦୀର୍ଘ ପନ୍ଦର ବର୍ଷ ଧରି ଏ ପାଲା ଚାଲିଥିଲା। ବାଦୀପାଲା ତ ଅନେକ ଦିନ ଆଗରୁ ବନ୍ଦ ହୋଇ ଯାଇଥିଲା। ଗାଁ ଲୋକେ ଏଇଥିରୁ କିଛି ରସାସ୍ୱାଦନ କରୁଥିଲେ। ଏବେ ଆଠ ଦଶବର୍ଷ ହେବ ଆମ ଗାଁ ଠାକୁରାଣୀ ମଣ୍ଡପରେ ବାଦୀପାଲା ଆରମ୍ଭ ହୋଇଛି।

ଆମ ଗାଁରେ ମନୋରଂଜନର କ୍ଷେତ୍ର ଖୁବ୍ ପ୍ରଶସ୍ତ ନ ଥିଲା। ବିଶେଷତଃ ସ୍ତ୍ରୀମାନଙ୍କ ପାଇଁ ଆଦୌ ନଥିଲା କହିଲେ ଚଳେ। ତେଣୁ ରଜ ବେଳେ ଥିଏଟର ଦେଖିବା ପାଇଁ ସେମାନେ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରୁଥିଲେ।

ଗାଁର ଅଧିକାଂଶ ଥିଲେ ଶିକ୍ଷକ କିମ୍ବା ଛାତ୍ର। ଦୁଇ ତିନୋଟି ଘରକୁ ଛାଡ଼ି ଦେଲେ ଆଉ କାହାର ହାତ ଚାଷ ନ ଥାଏ। ହାତ ଚାଷ ଯେଉଁମାନଙ୍କର, ସେମାନଙ୍କର ହଳିଆ ମୂଲିଆ ଥାଆନ୍ତି। ମେ ମାସ ମଝାମଝି ସ୍କୁଲ ଛୁଟି ହୁଏ। ପିଲାଙ୍କ ପାଇଁ ପାଠ ପଢ଼ାର ଝଞ୍ଜଟ ନଥାଏ। ଶିକ୍ଷକମାନଙ୍କ ପାଇଁ ଘରକାମ ନ ଥାଏ। ଛୁଟି ଆରମ୍ଭରୁ ଘର ଛପର କାମ ତୁଟି ଗଲେ, ଆମ୍ବୁଲ ଆଚାର ପାଇଁ ଆମ୍ବ ଦିଟା ତୋଳି ଦେଲେ କାମ ଶେଷ ହୁଏ। ଏ ତ ଦୁଇ ତିନି ଦିନର କାମ। ବାକି ଦିନ ଗୁଡ଼ିକ କଟିବ କିପରି ? ଏଇ ସମୟଟା ତେଣୁ ଥିଏଟର ପାଇଁ ଅନୁକୂଳ ସମୟ।

'ମୁଦ୍ରାରାକ୍ଷସ'ର ଶ୍ଳୋକଟିଏ ମନେ ପଡୁଛି- 'ଟୀୟତେ ବାଳି ଶସ୍ୟାପି ସତ୍‌କ୍ଷେତ୍ରେ ପତିତା କୃଷିଃ'। ମଂଜିରୁ ଗଜା ହେବା ପାଇଁ- ଗଜାଟି ଗଛରେ ପରିଣତ

ହେବା ପାଇଁ ଉପଯୁକ୍ତ କ୍ଷେତଟିଏ ଆବଶ୍ୟକ। ଆମ ଗାଁରେ ମଂଚଟିଏ ସ୍ଥାପନା ପାଇଁ, ତାର ବିକାଶ ପାଇଁ ଉପଯୁକ୍ତ କ୍ଷେତ୍ରଟିଏ ପ୍ରସ୍ତୁତ ହୋଇ ରହିଥିଲା ଅନେକ ଦିନ ଆଗରୁ, ସାହିତ୍ୟ ଓ ସଂଗୀତ ପ୍ରତି ଗଭୀର ଅନୁରକ୍ତି ମାଧ୍ୟମରେ।

କୋଉ କାଳରୁ କେଜାଣି ଆମ ଦାଣ୍ଡ କାନ୍ଥରେ ଚୂନ ଲିପା ହୋଇ ଗୋଟିଏ କମଳବନ୍ଧ ମଧ୍ୟରେ କବିତାଟିଏ ଲେଖା ହୋଇଥିଲା। ଏ କବିତାଟି ଲେଖିଥିଲେ ମୋ ବାପାଙ୍କ ଅଜା ହରିହର ନାୟକ। ଘର ମଣିକଙ୍ଗ ପାଟଣା। ବୈଶ୍ୟ ହରି କବି ବୋଲି ତାଙ୍କୁ ଅନେକ ଜାଣନ୍ତି। ପାଲାକାରଙ୍କ ପାଇଁ ସେ ଗୀତ ତାକି ଦିଅନ୍ତି। ଏକାଧିକ ପାଲାକାରଙ୍କ ପାଇଁ ଏକ ସମୟରେ ଭିନ୍ନ ଭିନ୍ନ ବିଷୟରେ ଭିନ୍ନ ଭିନ୍ନ ଛନ୍ଦରେ ଗୀତ ରଚନା କରିବାର ଦକ୍ଷତା ତାଙ୍କର ଥିଲା ବୋଲି ବାପା କହୁଥିଲେ। ସେଇ କମଳବନ୍ଧ କବିତାରୁ ମୋର ଶାଗରୁ ପଦେ ମୁଗରୁ ପଦେ ମନେ ଅଛି।

ଶରଦ ଚନ୍ଦ୍ର ବଦନୀରେ ଆସ
x x x x x x
ସଙ୍ଗ ସ୍ନେହ ଚକ୍ର ବନ୍ଧରେ ବସ
x x x x x x
ସର୍ଜ୍ଜନା ଏହା କରିଲେ ଲୋକେଶ
x x x x x x
ସହଜେ ବାନ୍ଧବୀ ଅଟୁ ବାଳୀଶ
x x x x x x
ସହକେ ହରି କବୀଷ୍ଟ ମହେଶ

କମଳବନ୍ଧର କେଶରରେ ପୁଣି ପ୍ରତିଟି ପାଖୁଡ଼ାର ଶେଷ ଭାଗରେ 'ସ' ଲେଖା ହୋଇଥାଏ। ଗୀତର ପ୍ରତିଟି ପାଦ 'ସ'ରେ ଆରମ୍ଭ ହୋଇ 'ସ'ରେ ଶେଷ ହୁଏ। ଏହିପରି ଆଉ ଗୋଟିଏ ବନ୍ଧ ଉତ୍ସବ ସାନ୍ତବାପାଙ୍କ ଦାଣ୍ଡ କାନ୍ଥରେ ଲେଖା ହୋଇଥିବା ମୋର ମନେ ପଡୁଛି।

ମୋତେ ଯେତେବେଳେ ପାଞ୍ଚବର୍ଷ, ସେତେବେଳେ ମୋ ବୁଢ଼ୀମା ମୋତେ ସଂଧ୍ୟାବେଳେ ଗାଁ ମୁଣ୍ଡ ପଡ଼ିଆକୁ ବୁଲାଇ ନିଏ। ତାକୁ ସେତେବେଳେ ୭୦ ବର୍ଷରୁ ବେଶି ହେବ। ସେ ଗୁଣୁ ଗୁଣୁ ହୋଇ ଗୀତ ବୋଲେ-

'ରଜନୀ ରାଣୀଟି ତୋତେ ଦେଲା ମେଲାଣି
ପ୍ରେମ ବାୟାଣୀ।'

ମୋ ରାଗ ଆଉ ଦେଖେ କିଏ ? ମୁଁ ତା ପିଠିରେ ଦୁମୁ ଦୁମୁ କରି ବିଧା ବସାଏ। କାନ୍ଦେ, କହେ ତୁ କାହିଁକି ଭାଇଙ୍କ ନାଁରେ ଗୀତ ବୋଲୁଛୁ ମୋ ନାଁରେ ବୋଲୁ ନାହୁଁ।

ଭାଇଙ୍କ ନାଁ ରଜନୀ। ମୁଁ ଭାବେ ସେ ତାଙ୍କୁ ଆଦର କରି ଗୀତ ବୋଲୁଛି- ମୋତେ ପଚାରୁ ନାହିଁ।

ସଂଜ ହେଲେ ମା ମାନେ କୁନି କୁନି ପିଲାଙ୍କୁ କୋଳରେ ଶୁଆଇ ଥାପୁଡ଼ାଇ ଥାପୁଡ଼ାଇ ଗୀତ ଗାଆନ୍ତି-

କ, କ, କାଳନ୍ଦୀ ତୀରେ
ଖ, ଖ, ଖଟନ୍ତି ଧୀରେ
ଗ, ଗ, ଗରୁଡ଼ାସନ
ଘ, ଘ, ଘଟଣ ଶ୍ୟାମ।

ପିଲାର କଅଁଳିଆ ମନ ଭିତରେ ଗୀତଟି ଛପି ଯାଏ। ଗୀତ ଶିକ୍ଷା ହୁଏ- ଆପଣାଛାଏଁ ବର୍ଣ୍ଣ ପରିଚୟ ହୁଏ।

ସେଦିନ ମୋର ପାଞ୍ଚ ବର୍ଷର ନାତୁଣୀ ଲୁସୀ ଗୋଟିଏ ଗୀତ ଗୁଣୁ ଗୁଣୁ ହୋଇ ଗାଉଥିଲା। ତା ଆଇ ତାକୁ କହିବାରୁ ଗୀତଟି ବଡ଼ ପାଟିରେ ଗାଇଲା:-

ଦୁମୁ ଦୁମୁ ଦୁମୁ ଦୁମୁକା
ପିଠିରେ ବସିଲା ଗୁମୁକା
କାନ୍ଧରେ ବସିଛି ପୁଅ
ଆଖିରୁ ଝରଇ ଲୁହ
ସକ୍ ସକ୍ ହୋଇ କାନ୍ଦୁଛି
ତା ମା ଭାତ ରାନ୍ଧୁଛି।
କାନ୍ଦୁରା ମୁହଁ ଛି
ହସଖୁସିରେ ଯେ ପାଠ ପଢ଼ିବ
ତା ପାଇଁ ଭାତ ଘି (ଘୀ)

ସ୍କୁଲରୁ ଏ ଗୀତଟି ଶିଖି ଆସିଥିଲା।

କେତେ ଶିଶୁ ମନଛୁଆଁ ଗୀତ ଆମ ପିଲାଦିନେ ମା ମାନେ ପିଲାଙ୍କୁ କୋଳରେ ପୁରାଇ ଗାଉଥିଲେ। ଶୀତ ରାତିରେ ଯେତେବେଳେ ଦଳ ଦଳ ଅଚିହ୍ନା ପକ୍ଷୀ ଆକାଶ ଫଟାଇ ଚିଲିକା ଆଡ଼କୁ ଛୁଟନ୍ତି, ଛୋଟ ଛାମୁଣ୍ଡିଆ ତଳେ ଅଗଣା ଚୁଲୀ ଉପରେ ଝିଅବୋହୂ ମାନେ ନୂଆଗୁଡ଼ରେ ପିଠା କରି ବସନ୍ତି, ନୂଆଗୁଡ଼ର ମହୁଲୀ ବାସ୍ନା ଚାରିଆଡ଼େ ଖେଳିବୁଲେ, ସେତିକିବେଳେ ମା ମାନେ ଚୁଲୀ ମୁଣ୍ଡରେ ପିଲାମାନଙ୍କୁ କୋଳରେ ପୁରାଇ ଗୀତ ଶୁଣାନ୍ତି-

ତୋତେ ମୁଁ ବୋଲଇ ଗଉରୀ    ବୋଲେ ହୁଁଟି
ଆଣିଦେବି କୁଞ୍ଜ ଚଉଁରୀ    ବୋଲେ ହୁଁଟି

ରଜାପୁଅ ବଡ଼ ହଟିଆ ବୋଲେ ହୁଁଟି
ବାଟରେ ଥୋଇଛି ଖଟିଆ ବୋଲେ ହୁଁଟି

ଏବେ ପିଲାମାନେ ସ୍କୁଲରୁ ଗୀତ ଶିଖିବେ ସିନା ମା କୋଳର ଉଷୁମ ଭିତରେ ଗୀତର ସ୍ୱାଦ୍ ଅନୁଭବ କରିପାରିବେ ନାହିଁ। ମା ମାନଙ୍କୁ ସେପରି ଗୀତ ଆଉ ଜଣା ନାହିଁ। ସୁଖାନୁଭୂତିର ସଂଜ୍ଞା ବଦଳି ଗଲାଣି। ସୁଖ ସନ୍ଧାନୀ ମଣିଷଟି ଅନ୍ୟବାଟ ବାଛି ନେଲାଣି।

ବେଳେବେଳେ ଆମ ଗାଁକୁ 'ପୀତବାସ' ଅଜା ଆସନ୍ତି। ପୁରା ନାଁ ପୀତବାସ ନାୟକ। ଘର ରେଂଗାଳ। ସେ ବିଶିଦାଦିଙ୍କ ମାମୁଁ। ଜଣେ ଉଚ୍ଚକୋଟୀର ଦରବାରୀ ଗାୟକ ଭାବେ ତାଙ୍କର ବେଶ୍ ନାଁ। ଗଡ଼ଜାତ ରାଜା ମାନଙ୍କ ଦରବାରରେ ସଂଗୀତ ଗାଇ ସେ ଭଲ ଦି'ପଇସା ରୋଜଗାର କରନ୍ତି। ସେ ଆମ ଗାଁକୁ ଆସିଲେ ସଂଜବେଳକୁ ବିଶିଦାଦିଙ୍କ ବାରଣ୍ଡାରେ ସଂଗୀତର ଆସର ଜମେ। ବାପା ତାଙ୍କ ସହିତ ତବଲା ସଂଗତ କରନ୍ତି, ଉଦୟନାଥ ପିଇସା ହାରମୋନିଅମ୍। ଅତି ମଧୁର ତାଙ୍କର କଣ୍ଠ। ସେତେବେଳକୁ ତାଙ୍କୁ ପ୍ରାୟ ୬୦/୬୫ ବର୍ଷ ହେବ। ତଥାପି କଣ୍ଠର ମଧୁରତା ଅକ୍ଷୁଣ୍ଣ ଥାଏ। ଶୁଣିଛି, ସେ କାଳେ ଶୀତ ରାତିରେ ବେକେ ପାଣିରେ ପଶି ସଂଗୀତ ସାଧନା କରୁଥିଲେ।

ବାପା ବାହାରେ କେବେ ଗୀତ ଗାଇବା ମୁଁ ଶୁଣି ନାହିଁ। କିନ୍ତୁ ଘର ଭିତରେ ଅନେକ ସମୟରେ ମନ ଖୁସିଥିଲା ବେଳେ ଗୀତ ଗାଆନ୍ତି। ଗୀତ ଗାଇବା ବେଳେ ଗୀତର ଭାବ ସହିତ ଏକାତ୍ମ ହୋଇ ଯାଆନ୍ତି।

ସଂଜ ବୁଡ଼ିଲେ ବାପା ଲଣ୍ଠନ ଖଣ୍ଡେ ଧରି ଦାଣ୍ଡ ପିଣ୍ଡାକୁ ଆସନ୍ତି। ଲଣ୍ଠନ ଆଲୁଅ ଦେଖିଲେ ଯଦୁ ଦାଦି, ବାନା ବଡ଼ାପା ତାଙ୍କ ପିଣ୍ଡାରୁ ଓହ୍ଲାଇ ଆମ ପିଣ୍ଡାକୁ ଆସନ୍ତି। ବାପା ପିପିଲିରୁ ଗୋଟିଏ 'ସମାଜ' ବା 'ମାତୃଭୂମି' ଆଣିଥାନ୍ତି। ସେ ପଢ଼ନ୍ତି ଅନ୍ୟମାନେ ଶୁଣନ୍ତି। ସେତେବେଳେ ଗାଁ ଗହଳରେ ଖବରକାଗଜ ସ୍ୱପ୍ନ। ଜଣଙ୍କ ପରେ ଜଣେ ଆରୁହା, ସିଉଳା, ମାଟିଆପଡାରୁ ଆସି ଆମ ଦାଣ୍ଡ ପିଣ୍ଡାରେ ବସନ୍ତି। ମାତୃଭୂମିରେ ବୁଲା ଫକୀରର ଝୁଲାମୁଣି ବୋଲି ଗୋଟିଏ ସ୍ତମ୍ଭ ୰ବାଳକୃଷ୍ଣ କର ଲେଖୁଥାନ୍ତି। ଆମର ସେଇ ଛୋଟ ବୈଠକରେ ଏ ସ୍ତମ୍ଭଟିର ଆଦର ବେଶି। ମାସକରେ ଥରେ ନିଆଁଖୁଣ୍ଟ ଆସେ। 'ଡାମରା କାଉରେ ଡାମରା କାଉ' ବୋଲି ଗୋଟିଏ ବ୍ୟଙ୍ଗ ବିଦ୍ରୂପ ଭରା କବିତା ସେଥିରେ ଥାଏ। ସେ କବିତାର ଆଦର କହିଲେ ନ ସରେ।

ପାନ ଡାଲା ଆଗରେ ଥୁଆ ହୋଇଥାଏ। ସମସ୍ତେ ଖଣ୍ଡେ ଖଣ୍ଡେ ପାନ ଖାଇବେ। କାହା ବଟୁଆରୁ ଗୁଆ ସରି ଯାଇଥିବ ସେ ଫାଳ ଗୁଆ ଖଣ୍ଡେ ମାଗି ନେବ। କାହା ବଟୁଆରେ ପାନପତ୍ର ନଥିବ ସେ ଖଣ୍ଡେ ଦୁଇଖଣ୍ଡ ମାଗି ନେଇ ଚୂନଖାଇରେ ରଖିବ।

କାହା ବଟୁଆରେ ପାନ ପତ୍ର ନଥିବ କି ଗୁଣ୍ଡି ନଥିବ ସେ ବି ମାଗି ନେବ। ଉଠିଲା ବେଳକୁ ଝପ୍ କରି ଡାଲାରୁ ଫାଳଗୁଆ ଖଣ୍ଡେ ନେଇ ବଟୁଆରେ ପୂରାଇ ଚାଲିବ। ଯେ ପାନ ଗୁଣ୍ଡି ପାଇଛି, ଗୁଆ ପାଇବାକୁ ତା'ର ଅଧିକାର ସୃଷ୍ଟି ହୋଇଛି। ନିଜର ଅଧିକାର ବଳରେ ଗୁଆ ନେବ। କାହାକୁ ମାଗିବ କାହିଁକି ?

ଛୁଟିଦିନ ମାନଙ୍କରେ ଛାଇ ନେଉଟାଣି ବେଳେ ଆମ ସାହିରେ ଉଦୟନାଥ ପିଇସା (ଉଦୟନାଥ ମହାନ୍ତି) ତଳ ସାହିରେ କୃଷ୍ଣ ଦାଦି (କୃଷ୍ଣଚନ୍ଦ୍ର ନାୟକ) ନିଜ ନିଜ ଦାଣ୍ଡ ପିଣ୍ଡାରେ ଗ୍ରାମୋଫୋନ ବଜାନ୍ତି। କବିଚନ୍ଦ୍ରଙ୍କ ଭାଷାରେ ଦୁରଦୁରା ଫୁଲିଆ ଗ୍ରାମୋଫୋନ। ସେଥିରୁ ଝରିପଡ଼େ ଦୃଷ୍ଟିହୀନ ଅପନ୍ନା ପାଣିଗ୍ରାହୀଙ୍କ ମଧୁସ୍ରାବୀ ସଂଗୀତ-

ହୋଇଥାରେ ବେଶ କୁଞ୍ଜକୁ ଯିବୁ ପରା
ଦେଇଛନ୍ତି ସଙ୍କେତ ସେ ମୁରଲୀଧରା
ଉଚ୍ଚ କୁଚ ଯୁଗ ଚିତ୍ର ଲେଖି ମୃଗନାଭି ପତ୍ର
ଉରରେ ଲମ୍ବାଇ ହାର ମୁକୁତା ଝରା।

ସାଇ ଗୋଟାକର ପିଲା ଗ୍ରାମୋଫୋନ ଶୁଣନ୍ତି। ବାଟୋଇ ମାନେ ବି ଘଡ଼ିଏ ଅଟକି ଯାଆନ୍ତି ଗୀତ ପଦିଏ ଶୁଣିବା ପାଇଁ। ତାଙ୍କ ନାତୁଣୀ ଶକୁନ୍ତଳା ସାମନ୍ତରାୟଙ୍କ ଠାରୁ ପରେ ଶୁଣିଲି ୧୯୩୬ ମସିହାରେ ଗଜପତି କୃଷ୍ଣଚନ୍ଦ୍ର ଦେବ ତାଙ୍କୁ କଲିକତା ପଠାଇଥିଲେ, ଗୀତ ରେକର୍ଡିଂ ପାଇଁ। ସେଠାରୁ ଆସି କଳାଜ୍ୱରରେ ପ୍ରାଣତ୍ୟାଗ କଲେ ସେଇ ବର୍ଷ।

ଆମେ ପିଲାମାନେ ଶୀତ ଦିନ ସଂଜ ରାତିରେ ଏକାଠି ବସି ଅନ୍ତାକ୍ଷରୀ ଖେଳୁ। ଏଇ ଖେଳ ଭିତରେ ନୂଆ ନୂଆ ଗୀତ କାନରେ ବାଜେ- ମନେ ରହେ। ଥିଏଟର ଗୀତ, ପାଠ ବହିର ଗୀତ, ମା ଭଉଣୀମାନଙ୍କ ଠାରୁ ଶୁଣିଥିବା କୋଇଲି, ଗୋପୀଭାଷା, ଗୀତ ମନେ ଥାଏ। ଅନ୍ତାକ୍ଷରୀ ବେଶ୍ ଜମେ। ମଝିରେ ମଝିରେ ଗୀତ ମନେ ନପଡ଼ିଲେ ମୁଁ ମନରୁ ଫାନ୍ଦି ଗୋଟିଏ ପଦ ବୋଲି ଦିଏ। ପ୍ରତିପକ୍ଷ ପାଟି କରନ୍ତି- 'ଏଇଟା ମନଗଢ଼ା ଗୀତ। ଏ ଗୀତ ଚଳିବ ନାହିଁ।' ମୁଁ କିନ୍ତୁ ଛାଡ଼େ ନାହିଁ। ମିଛରେ ଗୋଟିଏ ବହିର ନାଁ କହିଦିଏ।

ବିଶ୍ୱନାଥ ସାନ୍ତବାପାଙ୍କୁ ଆମେ ନାଥ ସାନ୍ତପା ବୋଲି ଡାକୁ। ଶିକ୍ଷକତାରୁ ଅବସର ନେଇ ସେ ଗାଁକୁ ଫେରିଥାନ୍ତି। ଆଲୋ ମା ଲୋ ! ଆମେ ପିଲାଏ ତାଙ୍କୁ ବାଘ ଦେଖିଲା ଭଳି ଭୟ କରୁ। ଆମକୁ ଦେଖିବା ସଙ୍ଗେ ସଙ୍ଗେ ପାଠ ପଚାରିବେ। ଆସୁଥିବା ପାଠ ବି ତାଙ୍କୁ ଦେଖିଲେ ମନେ ପଡ଼ିବ ନାହିଁ। ମୋର ସମବୟସ୍କ ସାଙ୍ଗମାନଙ୍କ ଘର, ଗାଁର ଗୋଟିଏ ପାଖରେ, ଆମ ଘର ଆଉ ଗୋଟିଏ ପାଖରେ। ଦିନକେ ଆଠ, ଦଶ ଥର ମୋତେ ତାଙ୍କ ବାଟ ଦେଇ ଯିବାକୁ ପଡ଼େ। ପବନ ଭଳି ଦୌଡ଼ି ଦୌଡ଼ି ମୁଁ ତାଙ୍କୁ ପାର

ହୋଇଯାଏ। ସେ ଚୌକିଟିଏ ଉପରେ ବସି ଲାବଣ୍ୟବତୀ ହେଉ ଅଥବା ବୈଦେହୀଶ ବିଳାସ ହେଉ ପଢୁଥିବେ। ବେଳେବେଳେ ମୁଁ ତାଙ୍କ ହାବୁଡ଼ରେ ପଡ଼ିଯାଏ। ମୋତେ ଶବ୍ଦାର୍ଥ ପଚାରନ୍ତି, ନହେଲେ ବନାନ ପଚାରନ୍ତି।

ଥରେ ମୋତେ ଗୋଟିଏ ଅଙ୍କ ପଚାରିଲେ। ସେତେବେଳକୁ ମୁଁ ଆସି ୯ମ ଶ୍ରେଣୀରେ ପଢ଼ିଲିଣି। କହିଲେ ଗୋଟିଏ ପୋଖରୀରେ ଗୋଟିଏ ପଦ୍ମ ଫୁଲ ପାଣି ଉପରକୁ ୨ ହାତ ଦିଶୁଥିଲା ପବନ ହେବାରୁ ୪ ହାତ ଦୂରରେ ପାଣି ସହିତ ମିଶି ଗଲା। ପୋଖରୀରେ କେତେ ପାଣି ଥିଲା ?

ମୋ ପାଇଁ ଏ ଅଙ୍କଟି ଖୁବ୍ ସହଜ ଥିଲା। ମୋର ମ୍ୟାଥ୍‌ମେଟିକସ୍ ଅପସ୍‌ନାଲ୍ ଥିଲା। ଏଇଭଳି ଅଙ୍କ ଆମେ କରୁଥିଲୁ। କିନ୍ତୁ ଏ ଅଙ୍କ ସମାଧାନ କରିବାକୁ ହେଲେ x ପକାଇ ଆଲଜେବ୍ରା ମାଧ୍ୟମରେ କରିବାକୁ ହେବ। ଅନ୍ୟଥା ଏହାକୁ ସମାଧାନ କରିହେବ ନାହିଁ। ନାଥ ସାନ୍ତପା ଆଲଜେବ୍ରା ଜାଣି ନାହାନ୍ତି। ସେ କିପରି ଉତ୍ତର ଠିକ୍ ହେଲା କି ନାହିଁ ଜାଣିବେ ? ମୁଁ ଠିକ୍ ଉତ୍ତରଟି କହିଦେଲି। ସେତେବେଳକୁ ଆମେ ବଡ଼ ହୋଇଗଲୁଣୁ। ପିଲାଦିନର ଡର ଛାଡି ଗଲାଣି। ତାଙ୍କୁ କହିଲି ତୁମେ ଅଙ୍କ କଷି ମୋତେ ଦେଖାଇ ଦିଅ। ମୋତେ ଚକିତ କରି ଅଙ୍କଟିକୁ ସେ କୌଣସି ଏକ ସୂତ୍ର ସାହାଯ୍ୟରେ ତୁଣ୍ଡେ ତୁଣ୍ଡେ ସମାଧାନ କରିଦେଲେ। ଆଗରୁ କହିଛି ଆମ ଗାଁରେ ଅଧିକାଂଶ ଥିଲେ ଶିକ୍ଷକ। କେତେକଙ୍କ ଘରେ ଅଙ୍କ ପୋଥି ଥିଲା। ପିଲାଦିନେ ମୁଁ ଗୋଟିଏ ଅଙ୍କ ପୋଥି ଟିକି ଜୟିଭାଇଙ୍କ ଘରେ ଦେଖିଛି, ପଢ଼ିଛି। ସେତେବେଳେ ତା'ର ମହତ୍ତ୍ୱ ବୁଝିପାରି ନଥିଲି। ଏବେ ଖୋଜିଲା ବେଳକୁ ଆଉ ନାହିଁ।

ଟିକି ଜୟି ଭାଇ (୰ଜୟକୃଷ୍ଣ ମହାନ୍ତି) ଥିଲେ ଜଣେ ଚାହାଳି ଶିକ୍ଷକ। ତାଙ୍କ ପାଖରେ ଗୋଟିଏ ପାଞ୍ଚ ବର୍ଗର ଅମରକୋଷ ଏବଂ ଗୋଟିଏ ଛାନ୍ଦ ରତ୍ନାକର ଥିଲା। ଚାହାଳିରେ ସକାଳବେଳା ପଣିକିଆ, କଢ଼ାଗଣ୍ଡା, 'ଓଡାଙ୍କ ମେଲାଙ୍କ'* ପଢ଼ା ହୁଏ, ଉପରଓଳି ଛାନ୍ଦ ରତ୍ନାକର, ଅମର କୋଷ। ଅନେକ ସମୟରେ ଟିକି ଜୟି ଭାଇ ମୋଠାରୁ ଜାଣିବା ପାଇଁ ଗୋଟିଏ ଗୋଟିଏ ଛାନ୍ଦର ଅର୍ଥ ପଚାରନ୍ତି। ମୁଁ କିଛି କିଛି କହିପାରେ କିନ୍ତୁ ଅଧିକାଂଶ କହିପାରେ ନାହିଁ। ମୋତେ ଖୁବ୍ ଖରାପ ଲାଗେ।

ମୋର ସପ୍ତମଶ୍ରେଣୀ ବୃତ୍ତି ପରୀକ୍ଷା ସରିବା ପରେ ହାତରେ ବହୁତ ସମୟ ମିଳିଲା। ଅନ୍ୟମାନଙ୍କର ପରୀକ୍ଷା ସରି ନଥାଏ। ଖେଳ ସାଥି ନଥାନ୍ତି। ଅମରକୋଷ ମାଗି ଆଣି କିଛି କିଛି ମୁଖସ୍ଥ କଲି। ଚାଣକ୍ୟ ଶ୍ଳୋକ ବହି ଖଣ୍ଡିଏ ମଧ୍ୟ ହାଟରୁ ଆଣିଲି। ଛାନ୍ଦ ରତ୍ନାକର ବୁଝାଇ ଦେବାକୁ ବାପାଙ୍କୁ କହିଲି। ପୁରାତନ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ। ରାତିରେ ସେ ମୋତେ ଗୋଟିଏ ଗୋଟିଏ ଛାନ୍ଦ ବୁଝାଇ ଦିଅନ୍ତି।

* ମିଶାଣ ସମ୍ବନ୍ଧୀୟ ସୂତ୍ର।

ଏଥିରୁ ବହୁଗୀତ ଆପଣାଛାଏଁ ମନେ ରହିଗଲା । ଏଣିକି ଆଉ ନାଥ ସାନ୍ତପାଙ୍କୁ ଡରିବାକୁ ପଡ଼ିଲା ନାହିଁ କି ଟିକି ଜୟିଭାଇଙ୍କ ଆଗରେ ଅପ୍ରସ୍ତୁତ ହେଲି ନାହିଁ । ଗାଁରେ ଛାନ୍ଦର ଆଦର ଥିଲା କିନ୍ତୁ ଚର୍ଚ୍ଚା ନଥିଲା । ମୁଁ ମୋର ସମବୟସୀଙ୍କ ମଧ୍ୟରେ ଚର୍ଚ୍ଚା ଆରମ୍ଭ କଲି । ସୁଦର୍ଶନ (ସୁଦର୍ଶନ ପ୍ରଧାନ) ଏଥିରେ ଖୁବ୍ ପ୍ରଭାବିତ ହୋଇଥିଲା । ଭୁବନେଶ୍ୱର ବି.ଏମ୍. ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାଁ ଲେଖାଇବା ପରେ ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ମୋର ଗୋଟିଏ ସ୍ୱତନ୍ତ୍ର ସ୍ଥାନ ରହିଲା । ଏତେବେଳକୁ ମୁଁ ରାଧାନାଥ ରାୟ, ଗୋପାଳ ପ୍ରହରାଜ, ଫକୀରମୋହନ ସେନାପତି, କାହ୍ନୁଚରଣ ମହାନ୍ତିଙ୍କ ଅଧିକାଂଶ ରଚନା ପଢ଼ି ସାରିଥାଏ । ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ ଅଦ୍ୱୈତ ବାବୁ (ଅଦ୍ୱୈତାନନ୍ଦ ଚମ୍ପତି) ମୋତେ young philosopher ବୋଲି ଡାକନ୍ତି । ପାଣ୍ଡବ ସାର୍ ତାଙ୍କ ରୀତି କବିତା ଗୁଡ଼ିକ ମୋତେ ପଢ଼ି ଶୁଣାନ୍ତି । ଯୋଗୀ ସାର୍ (ଯୋଗୀନ୍ଦ୍ର ବିଶ୍ୱାଳ) ପୁଅ ବୋଲି ଡାକନ୍ତି-ଭାଷଣ ଦେବାକୁ ହାତ ଧରି ଟାଣି ନିଅନ୍ତି । ଦାଶରଥୀ ସାର୍ ଲମ୍ବା ଛୁଟି ପୂର୍ବଦିନ୍ ପଚାରନ୍ତି, 'ଦୁର୍ଗା ଚରଣ, ଆଜି ମନ କିମିତି ଲାଗୁଛି, ଉପମାଟିଏ ଦିଅ'। ସେଇ ସୂତ୍ରରେ ହାଇସ୍କୁଲର ତତ୍‌କାଳୀନ ଶିକ୍ଷକ ଆଡ୍‌ଭୋକେଟ ହାଡ଼ିବନ୍ଧୁ ହ୍ୟାଲି ଏବେ ମଧ୍ୟ ମୋର ବଂଧୁ, ଦାର୍ଶନିକ ଓ ଦିଗ୍‌ଦର୍ଶକ । ଗୋଟିଏ ଘଟଣା ମନରେ ଅଭୁଲା ସ୍ମୃତି ହୋଇ ରହିଯାଇଛି । ନ କହି ରହିପାରୁ ନାହିଁ । କାଗର ଅମାବାସ୍ୟା ଚାରିଦିନ ଅଛି ମାଟ୍ରିକ ପରୀକ୍ଷା ସରିଲା । ହଷ୍ଟେଲରୁ ଏକାଦଶ ଶ୍ରେଣୀର ଛାତ୍ରମାନେ ନିଜ ନିଜ ଘରକୁ ଚାଲିଗଲେ । ମୁଁ ଯେତେବେଳେ ବିଦାୟ ଆଣିବା ପାଇଁ ସୁପରିନ୍‌ଟେଣ୍ଡେଣ୍ଟଙ୍କ ନିକଟକୁ ଗଲି ସେ ଆଉ ଛାଡ଼ିଲେ ନାହିଁ । କହିଲେ କାଗର ଚାରିଦିନ ଅଛି । କାଗର ଦେଖିସାରି ଯିବ । ଏକାଦଶ ଶ୍ରେଣୀ ଛାତ୍ର ଭାବରେ ମୁଁ ଏକୁଟିଆ ହଷ୍ଟେଲରେ ରହିଲି । ମୋ ପାଇଁ ସେ ହଷ୍ଟେଲରେ ଗେଷ୍ଟ ମିଲ୍‌ର ବ୍ୟବସ୍ଥା କଲେ । କାଗର ପରଦିନ ଗାଁକୁ ଆସିଲି ।

ଏତେ ସ୍ନେହ !

ଏତେ ଆନ୍ତରିକତା !!

ଜୀବନରେ ଭୁଲିହେବ ନାହିଁ ।

ସାନ ଭଗିଭାଇ (ଭଗବାନ ମହାନ୍ତି) ଗାଁରେ ନିଜ ଉଦ୍ୟମରେ ଗୋଟିଏ ବ୍ୟକ୍ତିଗତ ପାଠାଗାର କରିଥାନ୍ତି । ନାଁ 'ଭଗବାନ ଲାଇବ୍ରେରି'। ଅଳ୍ପ କିଛି ଉପନ୍ୟାସ କାବ୍ୟ କବିତା ଥାଏ କିନ୍ତୁ ବେଶି ପରିମାଣରେ ଥାଏ ଡିଟେକ୍ଟିଭ ଉପନ୍ୟାସ । ସାହିତ୍ୟ ଦୃଷ୍ଟିରୁ ଡିଟେକ୍ଟିଭ ଉପନ୍ୟାସର କୌଣସି ମୂଲ୍ୟ ନାହିଁ । କିନ୍ତୁ ତରୁଣ ମାନଙ୍କୁ ଉପନ୍ୟାସ ପଢ଼ା ପ୍ରତି ଆଗ୍ରହୀ କରିବାରେ ଏଗୁଡ଼ିକର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ମୋ ଅଭିଜ୍ଞତାରୁ ମୁଁ ଏକଥା କହୁଛି । ଏ ପାଠାଗାରଟି ଆମ ସମସ୍ତଙ୍କର ବହୁ ଉପକାରରେ ଲାଗିଥିଲା ।

ଅନ୍ୟ ଗାଁ ଭଳି ଆମ ଗାଁରେ ଖୁଦୁରୁକୁଣୀ ଓଷା ଆଡ଼ମ୍ବରରେ ହୁଏ ନାହିଁ । ଓଷା ହେବାର ଆଠ ଦଶ ଦିନ ଆଗରୁ ସାନ ଭଗି ଭାଇଙ୍କ ବୋଉ ମାଟି ଚକଟି ଗୋଟିଏ ବେଢ଼ଙ୍ଗିଆ ମୂର୍ତ୍ତି ପିଢ଼ା ଉପରେ ଗଢ଼ି ଦିଅନ୍ତି । ଚୂନ, ଡାଉ, ଅଙ୍ଗାର, ହରିତାଳରେ ରଂଗ ଦିଅନ୍ତି । ତାକୁଇ ନେଇ ଝିଅ ପିଲାମାନେ ପୂଜା କରନ୍ତି । ବଳରାମ ଦାସଙ୍କ ଖୁଦୁରୁକୁଣୀ ବହି ଆମ ଗାଁରେ ବୋଲାହୁଏ ନାହିଁ । ବାହାଦଲ ପୁରର ଜନପଦ କବି ଦୁଷ୍କରଙ୍କ ରଚିତ ହାତ ଲେଖା ଖାତା ବୋଲାହୁଏ । ସରଳ ଶବ୍ଦ ଯୋଜନା ଏବଂ ବିଭିନ୍ନ ରାଗର ସମାହାର ଯୋଗୁଁ ଏହାର ଆଦର ବହୁତ । ପଦଟିଏ ସେଥିରୁ ଉଦ୍ଧାର କରୁଛି :-

ଧୂଳିରେ କରନ୍ତି ଘର, ଭାତ ତିଅଣ ଆବର
କାହାକୁ କିଏ ସେ ପରଷି ଦିଅଇ, କେ ହସଇ କର କର ।
କେ ବୋଲେ ବଉଳବେଣୀ, ବସାଇବା କାଞ୍ଜୀ ପାଣି
ମୋହ କଥା କଲେ ବଘାରି ଖାଇଲେ ମଜା ନେଉଥିବ ଜାଣି ।

ହଜିଲା ଦିନର ରଣ କୁହୁଡ଼ି ଭିତରୁ ଛାପି ଛାପିକା ସ୍ମୃତି ଝିଅ ପିଲାଙ୍କର କଅଁଳ ମନ ତଳେ ଉଙ୍କି ମାରେ ।

ଖୁଦୁରୁକୁଣୀ ଶେଷ ପାଳି ଦିନ ହାରମୋନିଅମ୍, ଜୁଗି ତବଲା ଧରି ଭଗି ଭାଇ ହାକର ହୁଅନ୍ତି ପୂଜା ସ୍ଥାନରେ । ଦୁଇଟି ଝିଅ କଣ୍ଠରେ କଣ୍ଠ ମିଳାଇ ଦୁଷ୍କର ଛାନ୍ଦ ଗାଆନ୍ତି । ସଂଗତ କରନ୍ତି ଭଗିଭାଇ, ବିଶି ଦାଦି । ସାରା ଗାଁର ଝିଅ ମାନେ ଗୋଟିଏ ସ୍ଥାନରେ ପୂଜା କରନ୍ତି । ଗୋଟିଏ ବର୍ଷ କୌଣସି କାରଣରୁ ଝିଅ ପିଲାମାନଙ୍କ ମଧ୍ୟରେ ମନୋମାଳିନ୍ୟ ହେଲା । ଦୁଇ ଜାଗାରେ ପୂଜା ହେଲା । ମୂର୍ତ୍ତି ଆସିଲା, ମେଢ଼ ତିଆରି ହେଲା, ବାଣ ଫୁଟିଲା, ବେଶି ପଇସା ଖର୍ଚ୍ଚ ହେଲା । ତା' ପରଦିନ ଦୁଇଗୋଷ୍ଠୀର ନେତାଙ୍କୁ ଡାକି ଆଉ ଏପରି ନ କରିବାକୁ ବାପା ପରାମର୍ଶ ଦେଲେ । ବାସ୍ ସେତିକି । ଆଉ ତା ପରଠାରୁ ଝିଅ ପିଲାମାନେ କେବେ ଭାଗ ଭାଗ ହୋଇ ନାହାନ୍ତି ।

ଆମ ଗାଁରୁ ଯେଉଁ ତିନିଜଣ ପ୍ରଥମେ ପାଟଣା ଇଉନିଭରସିଟିରୁ ମାଟ୍ରିକ ପାସ୍ କରିଥିଲେ ସେମାନଙ୍କ ମଧ୍ୟରେ ୰ହରେକୃଷ୍ଣ ମହାନ୍ତି ଥିଲେ ଅନ୍ୟତମ । ଆମ ଗାଁ କାହିଁକି ପାଖାପାଖି ୩୦ ଖଣ୍ଡ ଗାଁରେ ଏମାନେ ଥିଲେ ପ୍ରଥମ ମ୍ୟାଟ୍ରିକୁଲେଟ । ହରେକୃଷ୍ଣ ଭାଇଙ୍କର ଲେଖା ଲେଖିରେ ଖୁବ୍ ଦକ୍ଷତା ଥିଲା । ଯଦି ନାଟକର ଗୋଟିଏ ଦୁଇଟି ଦୃଶ୍ୟ ବଦଳାଇବା ଦରକାର ପଡୁଥିଲା କିମ୍ବା ଗୀତ ଗୋଟିଏ ଦୁଇଟି ଯୋଗ କରିବା ଆବଶ୍ୟକ ହେଉଥିଲା ତେବେ ସେ ତାହା ଦକ୍ଷତାର ସହିତ କରି ଦେଉଥିଲେ ।

ଏତେବେଳକୁ କାଶୀଭାଇ ଶିଶୁ ସାହିତ୍ୟ ରଚନାରେ ମନୋନିବେଶ କରିଥାନ୍ତି । ସେ ଅନେକ ପାଠ୍ୟପୁସ୍ତକ ରଚନା କରି ବେଶ୍ ସୁନାମ ଅର୍ଜନ କରିଥାନ୍ତି । ପାଠ୍ୟ ପୁସ୍ତକ ବ୍ୟତୀତ ଶିଶୁ ମାନଙ୍କ ମନୋରଂଜନ ପାଇଁ ଅନେକ ଦେଶାତ୍ମବୋଧ ଗୀତ ପୁସ୍ତକ

ଆକାରରେ ପ୍ରକାଶ କରୁଥାନ୍ତି । ନାଟକର ମନଛୁଆଁ ସ୍ୱରକୁ ନେଇ ସେ ଗୀତ ରଚନା କରନ୍ତି । ସେଥିପାଇଁ ପିଲାଙ୍କ ମଧ୍ୟରେ ଏ ଗୀତର ଆଦର ବହୁତ । ଏବେ ତାଙ୍କର 'ମୁଁ କୁନ୍ତୀ କହୁଛି' ପୁସ୍ତକଟି ପ୍ରକାଶ ପାଇଛି ।

ଦଶହରା ଛୁଟିରେ ଦୂରଦୂରାନ୍ତରେ ଚାକିରି କରିଥିବା ଲୋକମାନେ ଗାଁକୁ ଆସନ୍ତି । ଗାଁରେ ନୂଆ ଜୀବନର ସଂଚାର ହୁଏ । ଘରେ ଘରେ ପିଠା ପଣା, ଦିଆନିଆ, ଯିବା ଆସିବା, ଡାକ ହାକରେ ଗାଁ ଦାଣ୍ଡ କୁରୁଳି ଉଠେ । ଦିନ କେଇଟି, ନିଜ ପରିବାର ସହିତ ମିଶି କୁମାର ପୂର୍ଣ୍ଣିମା ପରଦିନ ପୁଣି ଫେରିଯିବେ କର୍ମକ୍ଷେତ୍ରକୁ । ସେଥିପାଇଁ କୁମାର ପୂର୍ଣ୍ଣିମା ରାତିରେ ମଝି ଦାଣ୍ଡରେ ଗୋଟିଏ ସଂଗୀତର ଆସର ବସେ । ତାସ ଖେଳ ବି ଚାଲେ । ରାତି ଅଧବେଳକୁ ଆସର ସରେ । ସେତେବେଳକୁ କିନ୍ତୁ ଝିଅ ପିଲାଙ୍କର ନାଚ ଗୀତ ସରି ନଥାଏ । ସେମାନଙ୍କର ସମବେତ ଉଦ୍ଦାତ୍ତ କଣ୍ଠରୁ ତଥାପି ଶୁଭୁଥାଏ-

ପୁଂଚି ଲୋ ମା ପୁଂଚି
ଯା ଯା ଯା ଘୁଂଚି
ଗହୀର ବିଲରେ ମଇଁଷି
ଧାନ କେରି କେରି ଖାଉଛି
ଉଡ଼ାଇ ଦେ ରେ ଭାଇ ବେହେରା
ବୋହୂ ବାପଘର ଯାଉଛି ।

ରାତି ପାହିଲେ କାର୍ତ୍ତିକ ମାସ । ଗାଁର ସବୁ ବିଧବା ମହିଳାମାନେ ମାସ ସାରା କାର୍ତ୍ତିକ ବ୍ରତ କରିବେ । ପିଲାମାନଙ୍କ ପାଇଁ ଏଇଟି ସବୁଠାରୁ ଭଲ ମାସ । ମାସ ସାରା ସକାଳୁ ସକାଳୁ ଗଜାମୁଗ, ନଡ଼ିଆ, ପାଚିଲା କଦଳୀ ଭୋଗ ମିଳିବ । ଆମେ ସବୁ ନାକେଇ ଥାଉ କେତେବେଳେ ଭୋଗ ସରିବ । ଆମ ପାଟିରୁ ଲାଳ ବହେ ଯେତେବେଳେ ପୂଜାର ଅନ୍ତିମ ପର୍ଯ୍ୟାୟରେ କଉଡ଼ି ଖେଳର ଶେଷ ପଦ ଗୀତ ଆମ କାନରେ ବାଜେ-

ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ଚନ୍ଦନ କାଠ କୋଠି
ରାଇ ଦାମୋଦର ଜୁଆ ଖେଳୁଛନ୍ତି ହସ୍ତେ
ସୁବର୍ଣ୍ଣ ମୁଠି ।
ସାତ ମୁଠି ଜୁଆ ପଡ଼ିଲା ପ୍ରଭୁ ହୋଇଲେ ଧନ୍ଦା
ଆଉ କିଛି ନାହିଁ ରାଇ ଗୋ ନିଅ ଜୀବନ ବନ୍ଧା ।

ଗୀତ ସରିଲେ ଭୋଗ ବଢ଼ିବ, ଆମ ପାଉଣା ଆମେ ପାଇବୁ ।

ଆଉ କେଇଦିନ ଗଲେ କାର୍ତ୍ତିକ ପୂର୍ଣ୍ଣିମା । କୁଆଁତାରା ଉଠିବା ବେଳକୁ ଆବାଳ ବୃଦ୍ଧବନିତା ଆ କା ମା ଭୈ ବୁଡ଼ ପକାଇ ଠାକୁରାଣୀ ଦର୍ଶନକୁ ଯିବେ । ଏଥିପାଇଁ ବାଣ

ତିଆରି ହେବ। ତାଳପତ୍ର ସାଇଜ୍ କରି କାଟି ରଖିବାକୁ ହେବ, ବାସଙ୍ଗ ମୂଳ ପୋଡ଼ି ଅଙ୍ଗାର ତିଆରି ହେବ। ପୁରୁଣା ହସ୍ତାକ୍ଷର ଖାତା ଚିରି ନଳୀ ତିଆରି ହେବ। ଶୂନ୍ୟଫୋଟକା ପାଇଁ ସରୁ ଗୋଡ଼ି, ଝୋଟ ଯୋଗାଡ଼ ହେବ। ପରିତ୍ୟକ୍ତ ହାଣ୍ଡିଟିଏ କାଟି ଗୋଟିଏ ପଟେ ନାଲି କାଗଜ, ଆରପଟେ ହଳଦିଆ କାଗଜ ବାନ୍ଧି, ତା ଭିତରେ ମହମବତୀ ଜାଳି ସୂର୍ଯ୍ୟ, ଚନ୍ଦ୍ର କରିବାକୁ ପଡ଼ିବ। ଏସବୁ ଯୋଗାଡ଼ କରୁ କରୁ କାର୍ତ୍ତିକ ପୂର୍ଣ୍ଣିମା ଦୁଆର ବାଡ଼ାଏ।

ଭଗିଭାଇ ଆମର କଣାମାମୁଁ। ରାତି ତିନିଟାରୁ ସେ ଆମକୁ ଉଠାଇ ଦେବେ। ଗାଧୁଆ ଶେଷ ହେବାପରେ ବାଣ ମରିବ। ତାପରେ ସେ କାନ୍ଧରେ ହାରମୋନିଅମ୍ ଓହଳାଇ ବାହାରିବେ ଠାକୁରାଣୀଙ୍କ ପାଖକୁ। ସାଥିରେ କାନ୍ଧରେ ମୃଦଙ୍ଗ ଓହଳାଇ ବିଶି ଦାଦି। ନାଚି ନାଚି ଗାଇ ଗାଇ ଗିନି ବଜାଇ ସାଥିରେ ଚାଲିଥିବେ ପଚିଶ କି ତିରିଶି ପିଲା। କାର୍ତ୍ତିକ ପୂର୍ଣ୍ଣିମା ପରଦିନ ଗୋଧନ ବାହୁଡ଼ା। ମାଟିଆ ପଡ଼ାରୁ ଆସନ୍ତି କୃଷ୍ଣ, ନନ୍ଦ, ଯଶୋଦା। ନାଚି ନାଚି ଗାଇ ଗାଇ ଦହି ବିକନ୍ତି।

ଆମ ଗାଁ ସ୍କୁଲ ମାନଙ୍କରେ ସିନା ଗଣେଶ ପୂଜା, ସରସ୍ୱତୀ ପୂଜା ହୁଏ, କିନ୍ତୁ ଗାଁରେ ପୂଜା ହେଉ ନଥିଲା। ମୁଁ ୧୦ମ ଶ୍ରେଣୀରେ ପଢୁଥିଲା ବେଳେ ବିକି ମୁଁ ମିଶି ଗୋଟିଏ ବଡ଼ ଗଣେଶ ହାତରେ ତିଆରି କରି ତାଙ୍କ ଦାଣ୍ଡରେ ପୂଜା କରିଥିଲୁ। ସେଇ ଗୋଟିଏ ବର୍ଷ ପରେ ଆଉ କରିନାହୁଁ। ତା'ର ଅନେକ ବର୍ଷ ପରେ କିଛି ପିଲା ଗାଁ ଭିତରେ ଗଣେଶ ପୂଜା, ସରସ୍ୱତୀ ପୂଜା କଲେ। ବହୁବର୍ଷ ଧରି ଏ ପୂଜା ଚାଲିଲା। ପରେ ଗାଁ ଯାକର ସବୁ ପିଲାମିଶି ଏକାଠି ପୂଜା କଲେ। ସେ ବର୍ଷ ନିଜ ହାତରେ ଗୋଟିଏ ଗଣେଶ ମୂର୍ତ୍ତି ତିଆରି କରି ପିଲାଙ୍କୁ ଉପହାର ଦେଲି। ଖୁବ୍ ଜାକଜମକରେ ସେ ବର୍ଷ ପୂଜା ହେଲା। ଏବେ ଏକାଠି ପୂଜା କରୁଛନ୍ତି।

ମୋ ପିଲାଦିନର କଥା କହୁ କହୁ ହିଡ଼ ଡେଇଁ ଆଗକୁ ଚାଲିଗଲି। ପୁଣି ପଛକୁ ଫେରୁଛି।

ଆମ ପିଲାମାନଙ୍କ ଭିତରୁ ରାଧାନାଥ ଭାଇ, ରବି ଭାଇ, ପ୍ରାଣ ଭାଇ, ରାଜ ଭାଇ ସୁନ୍ଦର ଗୀତ ବୋଲନ୍ତି। ଭଗି ଭାଇ ଦିନେ ଦିନେ ସମସ୍ତଙ୍କୁ ଧରି ସଂଗୀତର ଆସର କରନ୍ତି। ଆର ସାଇରୁ ଆସନ୍ତି ବିଶି ଭାଇ। ସେ ବି ଚାରି ପାଞ୍ଚଟି ଛାନ୍ଦ ବୋଲନ୍ତି। ଭଗି ଭାଇ ହାରମୋନିଅମ୍ ଧରନ୍ତି, ବିଶି ଦାଦି ଡୁଗି ତବଲା। ଆମେ ପିଲାମାନେ ବି ପଛରେ ପଡ଼ି ନଥାଉ। ଆମେ ଆମର ଆସରର ଆୟୋଜନ କରୁ ମଝିରେ ମଝିରେ। ପରେ ପ୍ରେମାନନ୍ଦ, ସୂର୍ଯ୍ୟନାରାୟଣ ଏଥିରେ ଯୋଗ ଦେଲେ- ସୁନ୍ଦର ଗାଇଲେ।

ସାହିତ୍ୟ ଓ ସଂଗୀତ ପ୍ରତି ଆସକ୍ତି ନାଟକ ପରିବେଷଣ ପାଇଁ ଯେଉଁ କ୍ଷେତ୍ର ପ୍ରସ୍ତୁତ କରିଥିଲା ତାକୁ ପରିପୁଷ୍ଟ କରିଥିଲା ଗାଁର ଏକତା ଓ ସଂହତି।

ସେତେବେଳକୁ ଯୌଥ ପରିବାର ଭାଙ୍ଗି ନଥାଏ। ଯୌଥ ପରିବାର ଥିଲେ ପରିବାର, ପରିବାର ମଧ୍ୟରେ କମିବାଢ଼ି ନେଇ କଳି ତକରାଳ ହେବାର ଅବକାଶ ପ୍ରାୟ ନଥାଏ। ଗାଁ ଭିତରେ କଳି ତକରାଳ ତୁଟାଇବା ପାଇଁ ଗୋଟିଏ ବ୍ୟବସ୍ଥା ଥିଲା। କାଶୀଭାଇ ତାଙ୍କ ସ୍ମୃତିଚାରଣ କରି କହନ୍ତି:-

'ଶ୍ରୀଯୁକ୍ତ ଉଦୟନାଥ ନାୟକ ୟୁନିଅନର ପ୍ରେସିଡେଣ୍ଟ। ସେ ପିପିଲିରୁ ଫେରିବା ବେଳକୁ ସଂଜ। ସମଗ୍ର ଇଉନିଅନରେ ଶାନ୍ତି ଶୃଙ୍ଖଳା ଏବଂ ଏକତା ରକ୍ଷା କରିବାର ଗୁରୁ ଭାର ତାଙ୍କ ଉପରେ ନ୍ୟସ୍ତ। ଗାଁ କଳି ଗାଁରେ ତୁଟୁ, କୌଣସି ବିବାଦ ଥାନା, ଫାଣ୍ଡି ବା କୋର୍ଟ କଚେରିର ବଳୟ ଭିତରକୁ ନ ଯାଉ ଏଥିପାଇଁ ସେ ଗୋଟିଏ ଅଭିନବ ପନ୍ଥା ଉଦ୍‌ଭାବନ କରିଥିଲେ ୧୯୩୩ ମସିହାରୁ। ବିଭିନ୍ନ ସାଇର ସାତଜଣଙ୍କୁ ନେଇ କମିଟିଟିଏ ଗଠନ କରିଥିଲେ। ଏମାନଙ୍କ ମଧ୍ୟରେ ଆମ ଗାଁରୁ ଥିଲେ ବିଶ୍ୱନାଥ ନାୟକ (ସଂପାଦକ), ନିକେ କାଶୀନାଥ ନାୟକ ଓ ଭଗବାନ ନାୟକ। ନିୟମ କରିଥିଲେ ଅନ୍ୟୂନ ଚାରିଜଣ ସଭ୍ୟଙ୍କ ଉପସ୍ଥିତିରେ କମିଟି ସତ୍ୟାସତ୍ୟ ଅନୁସନ୍ଧାନ କରିବେ। ଆପତ୍ତିକାରୀ ପ୍ରଥମେ ଅଭିଯୋଗ ପତ୍ର ବିଶ୍ୱନାଥ ନାୟକଙ୍କ ନିକଟରେ ଦାଖଲ କରିବେ। ଦରଖାସ୍ତ ପାଇବା ପରେ ସେ କମିଟିର ସ୍ଥାନ ଓ ସମୟ ନିରୂପଣ କରିବେ, ଆପତ୍ତିକାରୀ, ଅଭିଯୁକ୍ତ ଏବଂ କମିଟିର ସଭ୍ୟ ମାନଙ୍କୁ ଜଣାଇଦେବେ। ଯେଉଁମାନେ ଦରଖାସ୍ତ ଲେଖି ନପାରିବେ ସେମାନେ ମୌଖିକ ଅଭିଯୋଗ ଉପସ୍ଥାପନ କରିବେ। ସାଧାରଣ ଅଭିଯୋଗ କମିଟି ବିଚାର କରିବେ, ନିଷ୍ପତ୍ତି ନେବେ, ଜଟିଳ ଅଭିଯୋଗ ପ୍ରେସିଡେଣ୍ଟଙ୍କ ବିଚାର ପାଇଁ ଯିବ।

ମାସର ଶେଷ ରବିବାର କିମ୍ବା ଅତି ଆବଶ୍ୟକ ହେଲେ ତା ପୂର୍ବ ରବିବାର ଦିନ କମିଟିର ବୈଠକ ବସିବ ସ୍କୁଲ ଘରେ। କମିଟିର ସଂପାଦକ ବିଭିନ୍ନ ଅଭିଯୋଗ, ସାକ୍ଷ୍ୟ ପ୍ରମାଣ ଓ କମିଟିର ମତାମତ ଉପସ୍ଥାପନ କରିବେ। ସ୍କୁଲ ଘରକୁ ଲାଗି ଭାଗବତ ଗାଦି। ପ୍ରେସିଡେଣ୍ଟ କହିବେ- 'ଆମେ ଠାକୁରଙ୍କ ପବିତ୍ର ସ୍ଥାନରେ ବସିଥାଇଁ, ମିଛ କହିଲେ ଠାକୁରଙ୍କ କୋପଦୃଷ୍ଟି ପଡ଼ିବ, ସତ କୁହ। କୋର୍ଟ କଚେରି ଗଲେ ପଇସା ପାଣି ଭଳି ଖର୍ଚ୍ଚ ହେବ। ଅଣ୍ଟାରୁ ପଇସା ସରିଲେ ପୁଣି ଏଠିକି ଆସିବ, ଆଗରୁ କାହିଁକି ସମାଧାନ ନ କରିବ ? ଆସ ସତ କୁହ।' ଲୋକଙ୍କ ମନକୁ କଥାଟି ପାଏ। ଠାକୁରଙ୍କ ବିଜେସ୍ଥଳୀ ଉପରେ ମିଛ କହିବାକୁ ସାହସ ପାଏ ନାହିଁ, ସତ ମାନି ଯାଆନ୍ତି। ବାଦୀ ପ୍ରତିବାଦୀଙ୍କ ଭିତରେ ମିଳାମିଶା ହୁଏ। ଶତ୍ରୁତା ଭୁଲି ଜଣେ ଅନ୍ୟ ଜଣଙ୍କୁ କୁଣ୍ଢାଏ। ସତ୍ୟର ଜୟ ହୁଏ। ହରିବୋଲ ପଡ଼େ।' ମୋ ଜାଣିବାରେ ଆମ ଗାଁ ପାଇଁ ବାପା ଦୁଇଟି ନୀତି ନିର୍ଦ୍ଧାରଣ କରିଥିଲେ। ଗାଁ ଭିତରେ କେହି କାହା ନାଁରେ ମକଦମା କଲେ ଗାଁରୁ କେହି ସାକ୍ଷ୍ୟ ଦେବେ ନାହିଁ। ପୁଣି ବାହା ନିମିତ୍ୟ ବେଳେ କିମ୍ବା ଗାଁରେ ମଡ଼ା ପଡ଼ିଥିବା

ବେଳେ କେହି କାହାକୁ ଅକତାଇବେ ନାହିଁ । ଗାଁରେ ଏକତା ରକ୍ଷା କ୍ଷେତ୍ରରେ ଏ ଦୁଇଟି ନୀତି ବେଶ୍ ସଫଳତା ହାସଲ କରିଥିଲା ।

ଗାଁର ସମସ୍ତେ ଅଳ୍ପେ ବହୁତେ ଶିକ୍ଷିତ । ଝିଅ ପିଲାଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ପ୍ରାଇମେରି ସ୍କୁଲ ଥିଲା । ଗାଁ ଭିତରେ ସମସ୍ତେ ମିଳିମିଶି ଚଳୁଥିଲେ । ସାନ ମାନେ ବଡଙ୍କୁ ମାନୁଥିଲେ, ବଡ଼ମାନେ ସାନଙ୍କୁ ସ୍ନେହ କରୁଥିଲେ । ସମଗ୍ର ଗାଁଟି ଗୋଟିଏ ପରିବାର ଭଳି ଚଳୁଥିଲେ । ଦୁଃଖରେ ସାହା ହେବାର, ଶୋକରେ ଆହା କରିବାର ନିର୍ଭର ପ୍ରତିଶ୍ରୁତି ରହିଥିଲା ପ୍ରତିଟି ହୃଦୟର ସ୍ପନ୍ଦନରେ । ପଲ୍ଲି ଜୀବନର ଶ୍ୱାସ ପ୍ରଶ୍ୱାସରେ ଭରି ରହିଥିଲା ଶ୍ରଦ୍ଧାର ସ୍ନିଗ୍ଧ ସ୍ପର୍ଶ । ଜୀବନ ଯାତ୍ରାର ପଦେ ପଦେ ଭରି ରହିଥିଲା ଶିଶୁ ସୁଲଭ ଉତ୍ସୁକତା, ତାରୁଣ୍ୟର ଚଞ୍ଚଳତା, ପ୍ରୌଢ଼ ସୁଲଭ ସଂଯମତା ଏବଂ ପ୍ରାଣ ପ୍ରାଚୁର୍ଯ୍ୟ । ଦାରିଦ୍ର୍ୟ ଥିଲା କିନ୍ତୁ ଦାରିଦ୍ର୍ୟର ନିପୀଡ଼ନ ଜୀବନର ଲଳିତ ପ୍ରବୃତ୍ତିକୁ ବିଡ଼ମ୍ବିତ କରିପାରି ନଥିଲା । ସବୁମିଶି ନାଟକ ମଂଚସ୍ଥ କରିବାକୁ ଗୋଟିଏ ଅନୁକୂଳ ପରିସ୍ଥିତି, ଉପଯୋଗୀ ପରିବେଶ ଥିଲା । ପୁଣି ଆହୁରି ଗୋଟିଏ ସୁବିଧା ଥିଲା । ପ୍ରାୟ ପ୍ରତ୍ୟେକଙ୍କର ଗଠନ ଥିଲା ସୁଠାମ ସୁନ୍ଦର, ଅଭିନୟ ପାଇଁ ଅପରିହାର୍ଯ୍ୟ ଆବଶ୍ୟକତା ।

୧୯୩୩ ମସିହା ତୃତୀୟ ରଜ । ସେଦିନ ଆମ ଘର ପାଖରେ- ଗାଁ ଦାଣ୍ଡରେ ଖଟ ପଡ଼ି ପ୍ରଥମ ଷ୍ଟେଜ୍ ବନ୍ଧା ହେଲା । ଡେ ଲାଇଟ୍ ଝୁଲିଲା । ଚାଦର ଛୁଞ୍ଚି ସୂତାରେ ସିଲାଇ ହୋଇ ଟଙ୍ଗା ହେଲା । ସିନ୍ ଅଭାବରେ ଚାଦର କାମ ଚଳାଇ ନେଲା । ହାତରେ ଗୁଡ଼ାଇ ଗୁଡ଼ାଇ ସିନ୍ ଉଠିଲା- ସିନ୍ ପଡ଼ିଲା ।

- ଅନାସ୍ୱାଦିତ ସୁଖ ସ୍ପର୍ଶରେ ତରୁଣୀଟି ଉଲ୍ଲସି ଉଠିଲା ଭଳି ସେ ଦିନ ପ୍ରମତ୍ତ କୋଳାହଳରେ ଗାଁ ଦାଣ୍ଡ କୁରୁଳି ଉଠିଥିବ !

- ହରିଣୀଟି ନିଜ ପ୍ରତିବିମ୍ବ ଦେଖି ଆତ୍ମହରା ହେଲାଭଳି ପାଉଡର ମଖା ମୁହଁଟିକୁ କେଜାଣି କେତେଥର ଅଭିନେତାଟି ମୁଗ୍ଧ ଆଖିରେ ଦର୍ପଣରେ ଦେଖିଥିବ । ଉଚ୍ଛଳ ଆନନ୍ଦରେ କୃଷ୍ଣଚୂଡ଼ା ପାଖୁଡ଼ା ମେଲିଥିବ ଓଠ କୋଣରେ । ଆବେଗର ପ୍ରଖରତାରେ ଛାତି ପଡୁଥିବ ଉଠୁଥିବ ଶାଶୁଘର ଏରୁଣ୍ଡି ଡେଉଁଥିବା ନୂଆବୋହୂଟି ପରି ।

- ଉଦୟନାଥ ପିଇସା ହାର୍‌ମୋନିଅମ୍‌ରେ ଆଦ୍ୟ ଓଁ କାର ତୋଳିଥିବେ-

ଝୁଲାଅ ଗୋ କିଶୋରୀ କାହ୍ନା
କିଶୋର କିଶୋରୀ ବୋଲି କୁଞ୍ଜେ ଉଡୁ ବାନା ।

କୋଳାହଳ ଶାନ୍ତ ପଡ଼ିଥିବ କେତୋଟି ମୁହୂର୍ତ୍ତ ପାଇଁ ।

- ଘଣ୍ଟି ବାଜିଥିବ, ସିନ୍ ଉଠିଥିବ ! ବ୍ରଜକନ୍ୟା ମାନଙ୍କର କଣ୍ଠରୁ ଝରି ପଡ଼ିଥିବ ଅମୃତ ବୋଳା ରାଗିଣୀ । ଜ୍ୟୈଷ୍ଠ ମାସିଆ ଝାଂଜି ପବନରେ ଲାଗିଥିବ ମଳୟର ସ୍ପର୍ଶ । କୋଇଲିଟି ନିଦୁଆ କଣ୍ଠରେ କୁହୁତାନ ତୋଳିଥିବ ।

- ସତେ କ'ଣ ବସନ୍ତ ଲେଉଟି ଆସିଲା କି !

- ବିସ୍ମିତ ଦର୍ଶକଟି ସଂବିତ୍ ଫେରି ପାଇଥିବ । ବସନ୍ତ ଆସିନାହିଁ । ମଂଚ ଉପରେ ବ୍ରଜକନ୍ୟାମାନେ ଗାଉଛନ୍ତି-

ମଳୟ ଅଚଳ ହୋଇଣ ପ୍ରବଳ ଦକ୍ଷିଣା ପବନ ବହିଲା
ନିକୁଞ୍ଜ ଭୁବନେ ରମ୍ୟ ଚ୍ୟୂତ ବନେ କୋକିଳ ପଞ୍ଚମେ ଗାଇଲା ।

ପାଖରେ କିଏ ଜଣେ ବେଣାଚେର ବିଞ୍ଚଣାଟିଏ ଘୁରାଉଥିବ- ମଧୁର ପବନ ସ୍ପର୍ଶକାତର୍ ଅଂଗକୁ ଛୁଇଁ ଛୁଇଁ ଯାଉଥିବ । ସକାଳ ଭ୍ରମରେ କୋଇଲିଟି ଉଠି ରାହା ଧରିଥିବ ।

- ମାନ ଭଂଜନର ସମାପ୍ତି ଘୋଷଣା କରି ଘଣ୍ଟି ବାଜିଥିବ । ସାଫଲ୍ୟର କୁକ୍ଷିରୁ ଜନ୍ମ ନେଇଥିବ ଆଗାମୀ ଦିନ ପାଇଁ ପ୍ରତିଶ୍ରୁତି । ଅଭୁଲା ସ୍ମୃତିଟିଏ ଛାଡ଼ି ଯାଇଥିବ ସବୁରି ମନ ତଳେ ।

- ଶୁଭ୍ରାଙ୍ଗୀର ବାହୁଲତାଟିଏ ଆଖିରେ ପଡ଼ିଲେ 'ତୋ ହାତକୁ କଳାକାଚ ମାନିବ ପରା' ଗୀତ ପଦକ ତରୁଣ ମନରେ ଉଙ୍କି ମାରିଥିବ ବହୁତ ଦିନ ଧରି ।

- 'କୃଷ୍ଣନାମ ଆଜିଠାରୁ ମୋ ଶ୍ରବଣେ ନ ଶୁଣାଇବଟି କେହି'ର ବେଦନା ବିଧୁର ରାଗିଣୀଟି ବହୁଦିନ ଧରି ଗାଁର ହୃଦୟ ତନ୍ତ୍ରୀକୁ ଦଳି ମକ୍ଛି ବିଷାଦିତ କରିଥିବ ।

ରାସର ଧାରା ମହର୍ଷି ବ୍ୟାସଦେବଙ୍କ ରଚିତ ଭାଗବତ ମହାପୁରାଣର ରାସ ପଞ୍ଚାଧ୍ୟାୟୀରୁ ଲମ୍ବି ଆସିଛି ବିଭିନ୍ନ ପ୍ରାନ୍ତୀୟ ଭାଷା ପର୍ଯ୍ୟନ୍ତ। ଓଡ଼ିଶାରେ ଏହି ଧାରା ଭକ୍ତକବି ଜଗନ୍ନାଥ ଦାସଙ୍କ ଶରତ ରାସ ଠାରୁ ଆରମ୍ଭ କରି କାଳୀ ଚରଣ ପଟ୍ଟନାୟକଙ୍କ ପର୍ଯ୍ୟନ୍ତ ପ୍ରଲମ୍ବିତ। ଗାଁ ଗାଁରେ ଭାଗବତ ଟୁଙ୍ଗି, ବୈଷ୍ଣବୀୟ ଚେତନାର ପ୍ରବଳ ସ୍ରୋତ, ପୁରୀ ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ଗାୟନ ପଲ୍ଲୀ ଜୀବନ ସହିତ ରାସକୁ ଅବିଚ୍ଛିନ୍ନ ଗ୍ରନ୍ଥିରେ ଆବଦ୍ଧ କରିଥିଲା। ରାଧାକୃଷ୍ଣ ପ୍ରେମ ଲୀଳାର ସରଳ ସାଂଗୀତିକ ଅଭିବ୍ୟକ୍ତି ଗୀତ ଗୋବିନ୍ଦରୁ ଆହୃତ ହୋଇ ଉତ୍କଳୀୟ ରାସରେ ପଲ୍ଲବିତ ହୋଇଥିଲା। ପଲ୍ଲୀ ଜୀବନକୁ ରସାପ୍ଲୁତ କରିଥିଲା। ଗୀତ ଗୋବିନ୍ଦର ଗୋଟିଏ ଅନୁପମ ଶ୍ଳୋକ ମନେ ପଡୁଛି।

ରଜନୀଜନିତଗୁରୁଜାଗରରାଗକଷାୟିତମଳସନିମେଷମ୍
ବହତି ନୟନମନୁରାଗମିବ ସ୍ଫୁଟମୁଦିତରସାଭିନିବେଶମ୍
ହରି, ହରି, ଯାହି ମାଧବ ଯାହି କେଶବ ମା ବଦ କୈତବବାଦମ୍
ତାମନୁସର ସରସୀରୁହଲୋଚନ ଯା ତବ ହରତି ବିଷାଦମ୍
କଜ୍ଜଳମଳିନବିଲୋଚନଚୁମ୍ବନବିରଚିତନୀଳିମରୂପମ୍
ଦଶନବସନମରୁଣଂ ତବ କୃଷ୍ଣ ତନୋତି ତନୋରନୁରୂପମ୍
ବପୁରନୁବହତି ତବ ସ୍ମରସଙ୍ଗରଖରନଖରକ୍ଷତରେଖମ୍
ମରକତଶକଳକଳିତକଲଧୌତଲିପେରିବ ରତିଜୟଲେଖମ୍

କାମ ପ୍ରପୀଡ଼ିତା ରାଧା ବେତସ କୁଞ୍ଜରେ ଶ୍ରୀକୃଷ୍ଣଙ୍କୁ ଅପେକ୍ଷା କରି କରି ରାତ୍ରି ଶେଷ ହୋଇଛି। ଯମୁନାର ନୀଳ ଜଳ ବେଣୀ ଉପରେ ଉଷାର ଆଲୋକ ଝଲସି ଉଠିଛି। ମିଳନର ଆଶା ବିଡ଼ମ୍ବିତ ହୋଇଛି। ବିରହ ଦଗ୍ଧ ଶରୀରକୁ ଯମୁନା ଜଳରେ ଭସାଇ ଦେବାକୁ ରାଧା ଉଦ୍ୟତା। ଏହି ସମୟରେ ବେତସ କୁଞ୍ଜର ଦ୍ୱାର ଦେଶରେ କୃଷ୍ଣ ଉପସ୍ଥିତ।

ରୁଦ୍ଧ ଅଭିମାନରେ ଆନତ ଦୃଷ୍ଟିତୋଳି ରାଧା ଚାହିଁଛନ୍ତି। କିନ୍ତୁ ଏ କଣ ଦେଖୁଛନ୍ତି ? କୃଷ୍ଣଙ୍କ ଦେହରେ ନାରୀ ସମ୍ଭୋଗର ଚିହ୍ନ ପ୍ରଭାତି କିରଣରେ ଝଲସି ଉଠୁଛି। ଅରୁଣାୟିତ ଅଳସ ନୟନରେ ବିନିଦ୍ର ରଜନୀର ସଙ୍କେତ। ନୀଳାଭ ତନୁରେ ନଖ କ୍ଷତ, ଦନ୍ତ କ୍ଷତର ଆଲେଖ୍ୟ। ପ୍ରଣୟିନୀର ନୟନ କଜ୍ଜଳରେ ରକ୍ତିମ ଅଧର ବିବର୍ଣ୍ଣ। ବକ୍ଷ ଦେଶରେ ସଦ୍ୟ ଲାକ୍ଷା ରେଖା। କୁପିତା ରାଧା କୁଞ୍ଜବନରୁ କୃଷ୍ଣଙ୍କୁ ନିର୍ବାସିତ କରିଛନ୍ତି- 'ଯାହି ମାଧବ, ଯାହି କେଶବ।'

ଏହାର ଅନୁସରଣରେ କୌଣସି ଏକ ବସନ୍ତ ରାସରେ ଏହି ଭଳି ପଦଟିଏ ରହିଛି।

ଯାଅ ହେ ମାଧବ ଆଭିରୀ ବାନ୍ଧବ
ଚନ୍ଦ୍ରାବଳୀ ଧବ କେଶବ
ତୁମ୍ଭଙ୍କୁ ଦେଖିଲେ ସନ୍ତାପ ମୋହର
ବେଳୁ ବେଳ ହୁଏ ଉଦ୍‌ଭବ ।
ଯା ପଦ ଯାବକ ମସ୍ତକେ ମଣ୍ଡିଛ
ହେ କପଟୀ କୁହାଳିଆ
ସେ ନବ ରମଣୀ ହୃଦ ବିଳାସିନୀ
ତାହା ନିକଟକୁ ଯାଆ ।

ଅନେକ ରାସରେ ଏହି ଯାହି ମାଧବ ଯାହି କେଶବ ଶ୍ଳୋକଟି ସନ୍ନିବେଶିତ ହୋଇ ଏହାକୁ ଉପୋଭୀର୍ଣ୍ଣ କରିଛି । ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ମାନ ଭଂକନରେ ଆଉ ଗୋଟିଏ ଅନୁରୂପ ସଂଗୀତ ରହିଛି-

ନ ଛୁଅଁ ମୋ ତନୁକୁ ଯାଅ କିହେ ମୋହନ
ଅଧରକୁ ଅଂକନ କାହୁଁ ଏ ଅରଜନ
ଖଞ୍ଜନ ନୟନୀ ସେ ଦେଇଥିଲା ଚୁମ୍ବନ
ଭିଡ଼ିଥିଲା ନାଗରୀ ଦେଖ ହୋ ଭଲ କରି
ଠାବେ ଠାବେ ଚୁଡ଼ି ସଞ୍ଚା କି ହେ ମୋହନ ।

ଠିକ୍ ଗୀତ ଗୋବିନ୍ଦ ଭଳି ପ୍ରତିଟି ବସନ୍ତ ରାସରେ ରାଧା କେତେବେଳେ ବାସକ୍‌ସଜ୍ଜା, କେତେବେଳେ ବିପ୍ରଲବ୍ଧା, ଖଣ୍ଡିତା, କଳହାନ୍ତରିତା, ପୁଣି ମାନିନୀ ।

* ବ୍ୟାସକୃତ ଭାଗବତ ପୁରାଣରେ ରାଧାଙ୍କ ନାମ ନାହିଁ । ସେଥିରେ ଭିନ୍ନ ଅର୍ଥରେ ବ୍ୟବହୃତ 'ଆରାଧିକା' ଶବ୍ଦକୁ ନେଇ ବୈଷ୍ଣବ ମାନେ ରାଧାଙ୍କ ନାମ ଭାଗବତ ପୁରାଣରେ ଅଛି ବୋଲି ଦାବି କରନ୍ତି । କିନ୍ତୁ ସମଗ୍ର ଭାରତୀୟ ସାହିତ୍ୟରେ ସର୍ବପ୍ରଥମେ ଗୀତ ଗୋବିନ୍ଦରେ ରାଧା, କୃଷ୍ଣଙ୍କର ଏକମାତ୍ର ପ୍ରଣୟିନୀ ରୂପେ ଚିତ୍ରିତା ହେଲେ । ମୂଳ ସଂସ୍କୃତ ଭାଗବତରେ କୌଣସି ଗୋପୀ କୃଷ୍ଣଙ୍କର ଏକମାତ୍ର ପ୍ରଣୟିନୀ ନୁହନ୍ତି । ଜଗନ୍ନାଥ ଦାସଙ୍କ ଶରତ ରାସରେ ରାଧା ମଧ୍ୟ ଏକମାତ୍ର ପ୍ରଣୟିନୀ ନୁହଁନ୍ତି ।

---

* There is no direct reference to Radha in the Harivamsa, the Visnu Purana or the Bhagabat Purana. But the mention of a favoured cowherdess who is 'worshiped' or desired (aradhita) by krishna in the tenth book of the Bhagabata Purana led the gosvamins to derive the name Radha from 'aradhita' and to claim Radha's place in the text.

*- Barbara Stoler Miller*
*- The Gitagovinda of Jayadeva*

ବହୁ ଗୋପାଙ୍ଗନା ମାନଙ୍କ ମଧ୍ୟରୁ ସେ ଜଣେ। କିନ୍ତୁ ଓଡ଼ିଆ ରାସ ମୁଖ୍ୟତଃ ଗୀତ ଗୋବିନ୍ଦର ପୃଷ୍ଠଭୂମି ଉପରେ ଗଢ଼ି ଉଠିଛି- ରାଧା ଏଥିରେ କୃଷ୍ଣଙ୍କର ଏକମାତ୍ର ପ୍ରଣୟିନୀ।

ପ୍ରଥମେ ପ୍ରଥମେ ଖୋଲାମଂଚ ତଳେ କାର୍ତ୍ତିକ ପୂର୍ଣ୍ଣିମାରେ ଶରତ ରାସ ଏବଂ ଫାଲ୍‌ଗୁନ ପୂର୍ଣ୍ଣିମାରେ ବସନ୍ତ ରାସ ଅଭିନୀତ ହେଉଥିଲା। ଏହାର ଲୋକପ୍ରିୟତା ଯୋଗୁଁ ଏହା ଯେ କୌଣସି ସମୟରେ ଅଭିନୀତ ହେବାକୁ ଲାଗିଲା। ତ୍ରୟୋଦଶ ଶତାବ୍ଦୀ ବେଳକୁ ଏହା ଲୋକପ୍ରିୟ ହୋଇ ସାରିଥିଲା ଏବଂ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଏହା ଲୋକପ୍ରିୟତାର ଶୀର୍ଷରେ ଉପନୀତ ହୋଇଥିଲା। ଶିଶୁ ବନମାଳୀ ଦାସ (୧୬୨୦) ପିଣ୍ଡିକ ଶ୍ରୀଚନ୍ଦନ, ଗୋବିନ୍ଦଚନ୍ଦ୍ର ଶୂରଦେଓ (୧୯୧୬) ମୋହନସୁନ୍ଦର ଦେବ ଗୋସ୍ୱାମୀ, ବାବାଜୀ ବୈଷ୍ଣବ ଚରଣ ଦାସ ଓ କାଳୀ ଚରଣ ପଟ୍ଟନାୟକ ଥିଲେ ଏ କ୍ଷେତ୍ରରେ ଜଣେ ଜଣେ ପ୍ରତିଭାବାନ ନାଟ୍ୟକାର। ଗୋବିନ୍ଦଚନ୍ଦ୍ର ଶୂର ଦେଓଙ୍କ ପ୍ରଯତ୍ନରେ ରାସ ମୁକ୍ତାକାଶ ମଂଚରୁ ଏକମୁଖୀ ମଂଚକୁ ସ୍ଥାନାନ୍ତରିତ ହୋଇଥିଲା- ରାସର ଆଧୁନିକୀକରଣରେ ତାଙ୍କର ଅବଦାନ ଥିଲା ଅତୁଳନୀୟ। କବିଚନ୍ଦ୍ର କାଳୀଚରଣ ଥିଲେ ନିଜେ ଜଣେ ସଂଗୀତଜ୍ଞ ଏବଂ କବି। ସରଳ ଭାଷାରେ ସଂଗୀତ ରଚନା କରିବାରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା। ତେଣୁ ତାଙ୍କର ରାସ ଅନନ୍ୟ ସାଧାରଣ ଲୋକପ୍ରିୟତା ଲାଭ କରିଥିଲା। ପୁରାତନ ରଚନାରୁ କିଛି କିଛି ସଂଯୋଗ କରି ସେ ଏହାକୁ ଆହୁରି ହୃଦ୍ୟ କରିଥିଲେ।

ମୋହନ ଗୋସ୍ୱାମୀଙ୍କ ଉପଯୁକ୍ତ ଦାୟାଦ ଗୌରକୃଷ୍ଣ ଗୋସ୍ୱାମୀ ଏହି ରାସ ପରମ୍ପରାକୁ ବହୁଦିନ ଅକ୍ଷତ ରଖିଥିଲେ। ମୁଁ ତାଙ୍କର ରାସଲୀଳା ଦେଖିବାର ସୌଭାଗ୍ୟ ପାଇଛି। ତାଙ୍କ ରାସରେ କୀର୍ତ୍ତନ ଶୈଳୀ ତ ଥିଲା କିନ୍ତୁ ନୂଆ ନୂଆ ରାଗ ରାଗିଣୀ ସଂଯୋଗ କରି ସେ ଏହାକୁ ଆହୁରି ମନୋଜ୍ଞ-ଆହୁରି ମର୍ମସ୍ପର୍ଶୀ କରି ଥିଲେ। ନିଜେ ଗୌରକୃଷ୍ଣ ଗୋସ୍ୱାମୀ କୃଷ୍ଣ ଭୂମିକାରେ ଅଭିନୟ କରୁଥିଲେ।

ଏହି ପରମ୍ପରାର ଶେଷ ଶିଖା ଥିଲେ ବିଜୟକେତନ ମଂଗରାଜ। କଳା ମଣ୍ଡପରେ ମୁଁ ତାଙ୍କର ଅଭିନୟ ପ୍ରଦର୍ଶନ ଦେଖିଛି। ବୋଧହୁଏ ୧୯୬୮ ମସିହା ହେବ। କେବଳ ମହିଳାମାନଙ୍କୁ ନେଇ ସେ ରାସ ଦଳ ଗଢ଼ିଥିଲେ। କେତେକ ବିଶିଷ୍ଟ ହିନ୍ଦି କବିଙ୍କ ରଚନା ଓ ଜୟଦେବଙ୍କ କେତେକ ରଚନାକୁ ସଂଯୋଗ କରି ଏହାକୁ ଖୁବ୍ ଆକର୍ଷକ ଓ ପ୍ରଭାବଶାଳୀ କରିଥିଲେ।

ନାଟ୍ୟକାର ଏବଂ ଚଳଚ୍ଚିତ୍ର ପ୍ରଯୋଜକ କମଳ ଲୋଚନ ମହାନ୍ତିଙ୍କୁ ଏ ଜାତି ଭୁଲି ପାରିବ ନାହିଁ। ସେଲୁଲଏଡ୍ ଟେପ୍ ଭିତରେ ସେ ବନ୍ଦୀ କରିଛନ୍ତି 'ମାନ ଭଂଜନ'। ରାସ ସହିତ ଓଡ଼ିଶୀ ନୃତ୍ୟ ସଂଯୋଗ କରି ସେ ଏହାକୁ ଆହୁରି ମନୋଜ୍ଞ କରିଛନ୍ତି। ଯେତେଥର ଦେଖିଲେ ବି ଆଉଥରେ ଦେଖିବାର ଲୋଭ ଛାଡ଼େ ନାହିଁ।

୧୯୩୨ ମସିହା ବେଳକୁ ରାସ ବହି ଘରେ ଘରେ ମିଳୁଥିବା କଥା କାଳୀଚରଣ ପଟ୍ଟନାୟକ ବିଦ୍ୟାବଳୀ ନାଟକର ମୁଖବନ୍ଧରେ କହିଛନ୍ତି । ସାକ୍ଷୀଗୋପାଳର ପ୍ରସିଦ୍ଧ ଓତାଘର ରାସଲୀଳା କରୁଥିବା କଥା ସେ କୁମ୍ଭାର ଚକରେ କହିଛନ୍ତି । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ପୁରୀ ଏବଂ ସାକ୍ଷୀଗୋପାଳରେ ମୋହନ ଗୋସ୍ୱାମୀ ଏବଂ କାଳୀ ଚରଣ ପଟ୍ଟନାୟକଙ୍କ ରାସଲୀଳା ମାନ ବହୁଳ ଭାବେ ମଞ୍ଚସ୍ଥ ହେଉଥିଲା । ରାସର ମନୋରଂଜନ ଧର୍ମିତା, ଲୋକପ୍ରିୟତା ତଥା ପୁରୀ ଓ ସାକ୍ଷୀଗୋପାଳରେ ଏହାର ବହୁଳ ପ୍ରସାର ଆମ ଗାଁର ଉଦ୍ୟୋକ୍ତା ମାନଙ୍କୁ ମାନଭଂଜନ ମଞ୍ଚସ୍ଥ କରିବାକୁ ପ୍ରଲୁବ୍ଧ କରିଥିବ ।

ମୋର ହେତୁ ପାଇଲାବେଳକୁ ଆମ ଗାଁରେ ବୈଷ୍ଣବୀୟ ଚେତନାର କୌଣସି ଚିହ୍ନ ବର୍ଣ୍ଣ ନଥିଲା । ଭାଗବତ ଘରେ ଅକାଳେ ସକାଳେ ପୁରାଣ ପଢ଼ା ହୁଏ । କୁଳମଣି ଓତା ବିଚିତ୍ର ଢଙ୍ଗରେ କପାଳକୁ ସିନ୍ଦୁର ଚନ୍ଦନରେ ଚିତ୍ରିତ କରି, ତମ୍ବା ସାମୁସାଇରେ ପାଣି ତୁଳସୀ ଦଳ ଧରି କେତେବେଳେ ଆସନ୍ତି, ବାତ୍ୟାକ୍ରାନ୍ତ ବର୍ତୀଖୁଣ୍ଟ ଭଳି ଆଗକୁ ନଇଁ ପଡ଼ିଥିବା ଅଣ୍ଟାକୁ ଅତି କଷ୍ଟରେ ସଳଖି ଠାକୁର ଘର କଂକିର ଖୋଲନ୍ତି, ପୁଣି କେତେବେଳେ ଚନ୍ଦନ ଘୋରି, ଫୁଲ ତୁଳସୀପତ୍ର ଦେଇ ବାହାରି ଯାଆନ୍ତି ତା'ର ହିସାବ କେହି ରଖନ୍ତି ନାହିଁ । ଇନ୍ଦୁ ପୂର୍ଣ୍ଣିମା ପାଖାପାଖି ଓତା ମହାଶୟ ଯେତେବେଳେ ବାର୍ଷିକ ପାଉଣା ପାଇଁ ଦୁଆର ଦୁଆର ବୁଲି- 'ଆଉ ପାରିବି ନାହିଁ ମୋତେ ଏଥର ଛୁଟି ଦିଅ' ବୋଲି ଅଳି କରନ୍ତି ସେତେବେଳେ ଠାକୁରଙ୍କୁ ନିତି ପ୍ରତି ଫୁଲ ଚନ୍ଦନ ଦିଆ ହେଉଛି ବୋଲି ଜଣାପଡ଼େ । ଏବେ ଦଶ ବର୍ଷ ହେବ 'ସୋମନାଥ' ଭାଗବତ ଟୁଙ୍ଗି ଆଗରେ ଅଷ୍ଟପ୍ରହରୀ ଆରମ୍ଭ କରିଛି । ଗୋଷ୍ଠୀ ବିନୋଦନର ଏ ଦୀପଶିଖାଟି ବେଶ୍ ଜଳୁଛି ।

ଠିକ୍ ଯେପରି ଧାର୍ମିକ ଚେତନା ବିରହିତ ବଉଳ ଫୁଲର ବାସ୍ନା, ପ୍ରଜାପତିର ଡେଣା, କୋଇଲିର କୁହୁତାନ ଜନମାନସକୁ ଆକର୍ଷଣ କରେ- ଆମୋଦିତ କରେ ରାସର ସାଂଗୀତିକ ବିଭବ ମଧ୍ୟ ଆମ ଗାଁର ଉଦ୍ୟୋକ୍ତା ମାନଙ୍କୁ ସେହିପରି ଆକୃଷ୍ଟ କରିଥିବ । ଯେଉଁଠି ବାଗୁଡ଼ି ଖେଳରୁ ନଉଡ଼ି ଖେଳ ଯାଏଁ- ମା କୋଳରୁ ମହାକାଳ କୋଳ ପର୍ଯ୍ୟନ୍ତ ଲୋକେ ସଂଗୀତରେ ବୁଡ଼ି ରହନ୍ତି ସେଠାରେ ରାସର ଆଦର କେତେ କହିବା ନିଷ୍ପ୍ରୟୋଜନ ।

ମୁଁ ଯେଉଁ ପ୍ରାଇମେରି ସ୍କୁଲରେ ପଢୁଥିଲି- ଯେଉଁଠି ରିହର୍ସଲ ହୁଏ ସେଠାରେ ଗୋଟିଏ ବଡ଼ ବରଗଛ ଥିଲା । ସେଇ ଗଛର ଗଣ୍ଡି ଦେହରେ ଆଲକାତରାରେ ଗୋଟିଏ ଚତୁର୍ଭୁଜ ମଧ୍ୟରେ ଲେଖାଥିଲା 'ବାଲ୍ୟଲୀଳା ୧୯୩୯' । ଯେଉଁ ଅଜଣା ବ୍ୟକ୍ତିଟି ଏହାକୁ ଲେଖି ଅତୀତକୁ ବାନ୍ଧି ରଖିବାକୁ ପ୍ରୟାସ କରିଥିଲେ ମୁଁ ତାଙ୍କର ଦୂରଦୃଷ୍ଟିକୁ ଶତକୋଟୀ ପ୍ରଣାମ ଜଣାଉଛି ।

ରାସର ଉଦ୍ୟୋକ୍ତା ଥିଲେ ଉଦୟନାଥ ମହାନ୍ତି। ଉଦ୍ୟୋକ୍ତା ସେ, ନିର୍ଦ୍ଦେଶକ ସେ, ସଂଗୀତକାର ସେ।

କେହି ଜଣେ ନାଟ୍ୟ ମଣ୍ଡଳୀର ନାଁ ଦେଇଥିଲେ 'ନୀଳକଣ୍ଠ ଡ୍ରାମାଟିକ୍ କ୍ଲବ'। ବୋଧହୁଏ ୧୯୪୪ ମସିହା ହେବ। ବସ୍ତ୍ରହରଣର ଗୋଟିଏ ଦୃଶ୍ୟରେ ମଂଚ ଉପରେ ପୋତା ହୋଇଥିବା ଗୋଟିଏ କଦମ୍ବ ଡାଳ ଉପରେ ଲୋକି ଭାଇ କୃଷ୍ଣ ବେଶ ହୋଇ ବସିଥିବାର ଗୋଟିଏ ଝାପ୍‌ସା ଦୃଶ୍ୟ ମନେ ପଡୁଛି। ବୈଷ୍ଣବ ଚରଣ ଦାସଙ୍କ ବସ୍ତ୍ର ହରଣ ନାଟକ ୧୯୨୯ରେ ପ୍ରକାଶ ପାଇଥିଲା। ୧୯୪୪ ମସିହା ବେଳକୁ ଏହା ନିଶ୍ଚୟ ଲୋକପ୍ରିୟତା ଅର୍ଜନ କରିଥିବ। ବାଲ୍ୟଲୀଳାରେ ବିଶିଭାଇ ବସୁଦେବ ଭୂମିକାରେ ଶ୍ରୀକୃଷ୍ଣଙ୍କୁ ଗୋପପୁର ନେଇ ଯାଉଥିବାର ଦୃଶ୍ୟ ମଧ୍ୟ ମନେ ପଡୁଛି। ଦ୍ୱିତୀୟ ବା ତୃତୀୟ ଥର ପାଇଁ ଏହା ଅଭିନୀତ ହେଉଥିଲା। ଯେଉଁ ଦୃଶ୍ୟଟି ମୋର ଆଖି ଆଗରେ ଏବେ ମଧ୍ୟ ସ୍ପଷ୍ଟ ଦିଶି ଯାଉଛି ସେ ହେଉଛି କଂସ ଭୂମିକାରେ ଅଭିନୟ କରୁଥିବା ଗିରିଧାରୀ ଭାଇଙ୍କର ସେ କୁମ୍ଭାଟୁଆ ଆଖି, ବଜ୍ର ଗମ୍ଭୀର ସ୍ୱର ଏବଂ ଗୋଟି ଗୋଟି କରି ଦେବକୀର ସାତ ପୁଅଙ୍କୁ ହତ୍ୟା କରିବାର ମାର୍ମିକ ଦୃଶ୍ୟ। ଆଉ ଗୋଟିଏ କଥା ବି ମନେ ପଡୁଛି। ଅଷ୍ଟମ ଗର୍ଭ ସନ୍ତାନକୁ କଂସ ହତ୍ୟା କରିବାର ସମୟ ଉପସ୍ଥିତ। ସିନ୍ ଉଠି ନାହିଁ। ଷ୍ଟେଜ୍ ଭିତରୁ ଆସି କେହି ଜଣେ, ମାସକର ଛୁଆକୁ ଟାଣି ନେଇ ପଳାଇଲା ଜଣେ ମହିଳା ଦର୍ଶକଙ୍କ ଠାରୁ। 'ଆଲୋ.ମୋ ଛୁଆକୁ କୁଆଡ଼େ ନେଲା' ବୋଲି ମା ପାଟି କଲାବେଳକୁ କଂସ ହାତରେ ସେ ଛୁଆ। ମା ଆଶ୍ୱସ୍ତ ହେଲା। କଂସ ହାତରୁ ବିଜୁଳୀ କନ୍ୟାଟି ଉଭେଇ ଯିବାର ଦୃଶ୍ୟଟି ମଧ୍ୟ ଅତି ଚମତ୍କାର ଭାବରେ ରୂପାୟିତ ହୋଇଥିଲା ସେଦିନ।

ଏହାପରେ ୧୯୫୩ ବା ୫୪ ମସିହାରେ ଆମ ଗାଁରେ ଶେଷଥର ପାଇଁ ରାସଲୀଳା ଅଭିନୀତ ହୋଇଥିଲା।

ଭକ୍ତ କବି ଜଗନ୍ନାଥ ଦାସଙ୍କ ରଚିତ ଶରତ ରାସ ମାଟିଆ ପଡ଼ାରେ ୧୯୬୨ ମସିହାରେ ଆରମ୍ଭ ହୋଇ ୧୯୯୪ ପର୍ଯ୍ୟନ୍ତ ଅଭିନୀତ ହେଉଥିଲା। ଚିଉ, ମୁଁ ତାଙ୍କୁ ସାହାଯ୍ୟ କରୁଥିଲୁ।

ଏବେ ଗାଁ ଗହଳିରେ ପଞ୍ଚକ ବେଳେ ଶରତ ରାସ ବହି କେବଳ ପଢ଼ା ହେଉଛି ସିନା ମଂଚରେ ଆଉ ରାସ ଅଭିନୀତ ହେଉ ନାହିଁ। ତାହା ଆଜି ଫସିଲ୍‌ରେ ପରିଣତ ହୋଇଛି।

୧୯୩୩ ମସିହାରେ ଆମ ଗାଁରେ ମଂଚ ସ୍ଥାପନ ହେବା ବେଳକୁ ଓଡ଼ିଆ ନାଟକ ଶୈଶବ ଅତିକ୍ରମ କରୁଛି, ବୟସ ଦୃଷ୍ଟିରୁ ନୁହେଁ- ବିକାଶ ଦୃଷ୍ଟିରୁ।

ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆରେ କୌଣସି ନାଟକ ରଚିତ ହୋଇ ନଥିଲା। ଅନେକ ସଂସ୍କୃତ ନାଟକ ଓଡ଼ିଶାର କବିମାନେ ରଚନା କରିଥିଲେ କିନ୍ତୁ ତାହା କେବଳ ରାଜ ଦରବାରରେ ଅଭିନୀତ ହେଉଥିଲା। ସାଧାରଣ ଜନତାଙ୍କୁ ଲୀଳା, ଯାତ୍ରା, ସୁଆଙ୍ଗ, ଚଢେୟ - ଚଢେଆଣୀ, ଶବର ଶବରୁଣୀ ଆଦିରେ ସନ୍ତୁଷ୍ଟ ରହିବାକୁ ପଡୁଥିଲା। ଜଗନ୍ମୋହନ ଲାଲାଙ୍କ ରଚିତ ବାବାଜୀ ଥିଲା ଓଡ଼ିଆ ଭାଷାର ପ୍ରଥମ ନାଟକ। ଏହା ୧୮୭୭ ମସିହାର କଥା।

ଗୋଟିଏ ଅଜଣା ସ୍ଥାନରେ ଜଣେ କ୍ଷୁଧାର୍ତ୍ତ ବାବାଜୀଙ୍କର ବିଭିନ୍ନ ଚରିତ୍ର ସହିତ ସଂପର୍କକୁ କେନ୍ଦ୍ର କରି ନାଟକର ଆରମ୍ଭ, ବିକାଶ ଓ ପରିସମାପ୍ତି।

କ୍ଷୁଧାର୍ତ୍ତ ବାବାଜୀ ଜଣେ ସେଦିନ ଉତ୍ତୀର୍ଣ୍ଣ ମଧ୍ୟାହ୍ନରେ ପହଞ୍ଚିଛନ୍ତି ସୁବଳ ପଟ୍ଟନାୟକଙ୍କ ବୈଠକ ଘରେ। ସେ ଆଉ କିଛି ଚାହାନ୍ତି ନାହିଁ। ପେଟପୂରା ଗଣ୍ଡିଏ ଖାଇବାକୁ ମିଳିଲେ ହେଲା। ଅତିଥି ଦେବତା। ଖାଲିପେଟରେ ଫେରିଯିବା ଅବିଧି। ପୂଜାରୀ ଆନନ୍ଦ ପଣ୍ଡା ପାଖକୁ ଖବର ଯାଇଛି ରୋଷାଇ ବ୍ୟବସ୍ଥା କରିବାକୁ।

ପୂଜାରୀ ଖାଇସାରି ଶୋଇଛି। ଛାଇ ନିଦ ଲାଗି ଆସୁଛି। ଏତେବେଳେ ଛାର ବାବାଜୀଟା ପାଇଁ ପୁଣି ଦହଗଂଜ ହେବାକୁ ପଡ଼ିବ !

ଆନନ୍ଦ ପଣ୍ଡାର ମନ ବଳି ନାହିଁ।

'ଓଳିକଯାକ ଖଟି ଖଟି ଶୋଇଥିଲା। ଏଇଟା ଆସି କଣ୍ଟକ ହେଲା। ତାକୁ ହୀନସ୍ତା ନକରି ଛାଡ଼ିବ ନାହିଁ।' - ଆନନ୍ଦ ପଣ୍ଡା ପଣ କରିଛି।

ରୋଷାଇ ଶେଷ ହେବାକୁ ସମୟ ଲାଗିବ। ଏଇ ଅବସର ସମୟଟା ନିଶା ଟିକିଏ ଖାଇ ମଜଗୁଲ ହେଲେ, ତା ସାଙ୍ଗକୁ ଗାଉଣା ବାଜଣା ହେଲେ ମନ୍ଦ ହେବ ନାହିଁ।

ନିଶା ଟିକିଏ ସେବନ କରିବାକୁ ସୁବଳ ପଟ୍ଟନାୟକ ବାବାଜୀଙ୍କୁ ଅନୁରୋଧ କରିଛନ୍ତି।

ବାବାଜୀ ନିଶା ଛୁଅନ୍ତି ନାହିଁ।

ସୁବଳ ପଟ୍ଟନାୟକଙ୍କ ଅନୁରୋଧ ରକ୍ଷା କରି ଭଜନଟିଏ କିନ୍ତୁ ଗାଇଛନ୍ତି ବାବାଜୀ। ସଂଗୀତ ପ୍ରେମୀ ସୁବଳ ପଟ୍ଟନାୟକଙ୍କ ମନ ଦୋହଲି ଯାଇଛି।

ଯଶୁ ଭଟ୍ଟାଚାର୍ଯ୍ୟ ନଥିଲେ ସଂଗୀତ ଆସରର ରଂଗ ଉଜୁଟେ ନାହିଁ। ବାଦ୍ୟଯନ୍ତ୍ରରେ ସଂଗତ କରନ୍ତି ଭଟ୍ଟାଚାର୍ଯ୍ୟ। ବାବାଜୀଙ୍କ ଭଜନ ସହିତ ସଂଗତ କରିବାକୁ ଆସିଛନ୍ତି।

ଗୀତର ଆସର ଜମି ଉଠିଛି । ମଦ ନ ଖାଇଲେ ସଂଗୀତ ଆସର କୁଆଡ଼େ ଫିକା ପଡ଼ିଯାଏ । ବାବାଜୀଂକୁ ଲୁଚାଇ ଦୁଇ ବଂଧୁ ମଦ୍ୟପାନ କରିଛନ୍ତି । ଯଶୁ ଭଟ୍ଟାଚାର୍ଯ୍ୟ 'ଗତ୍' ବଜାଇଛନ୍ତି- ବାଈଜୀ ବେଶରେ ନୃତ୍ୟ କରି କରି ସୁବଳ ପଟ୍ଟନାୟକ ଚେତା ହରାଇଛନ୍ତି ।

ବାବାଜୀ ସ୍ୱଗତୋକ୍ତି କରିଛନ୍ତି- 'ମୁହଁର କଥା ମୁହଁରେ ଅଛି, ଦେଖୁ ଦେଖୁ କ'ଣ ହେଲା ! କି ଦୁଃଖର ବିଷୟ୍-ଏପରି ବ୍ୟକ୍ତିର ଏପରି ଆଚରଣ !'

ବାବାଜୀ ଭୋଜନ କରିବେ । ଆନନ୍ଦ ପଣ୍ଡା ଭୋଜନର ଆୟୋଜନ କରିଛି । ଆସନ ପାରିଛି, ପତ୍ର ପକାଇଛି କିନ୍ତୁ ଖାଦ୍ୟ ଦେବା ପରିବର୍ତ୍ତେ କ୍ଷୁଧାର୍ତ୍ତ ବାବାଜୀଂକୁ ଗୋଟିଏ ହାଣ୍ଡିରେ ଜୀଅନ୍ତା କୁକୁଡ଼ା ପୁରାଇ, ପଲମ ଘୋଡ଼ାଇ ପ୍ରସାଦ ଆଣିଛି ବୋଲି କହିଛି । ହାଣ୍ଡିରୁ ପଲମ କାଢ଼ି ସ୍ୱହସ୍ତରେ ପରଷି ସେବା କରିବାକୁ ଅନୁରୋଧ କରିଛି । ବାବାଜୀ ପଲମ ଉଠାଇବା ପରେ କୁକୁଡ଼ାଟି ବାହାରି ଆସିଛି । ବିଜୟର ସ୍ପର୍ଦ୍ଧା ନେଇ ହିଂସ୍ର ଆନନ୍ଦରେ ନିଷ୍ଠୁର ପରିହାସ କରିଛି ଆନନ୍ଦ ପଣ୍ଡା- 'ମହାରାଜ, ଆପଣ ସାଗୁଆତି ସ୍ୱୀକାର କରିବାରୁ ମୁଁ କୁକୁଡ଼ାଟିଏ ଗୋଟାପଣେ ରୋଷ୍ଟ କରି ଆଣିଥିଲି । ସେ ତ ଆପଣଙ୍କ ହାତ ଲାଗିଲା ମାତ୍ରକେ ପ୍ରାଣ ପାଇ ବଂଚି ଉଠିଲା । ମୋର କି ଦୋଷ ? ମହାରାଜ, ଆପଣଙ୍କର ଅପାର ମହିମା । କୁକୁଡ଼ାକୁ ମାରି ରାନ୍ଧିଥିଲି । ସେ ପୁଣି ଜୀଇଁ ଉଠିଲା । ଓହୋ ଏପରି ତ କେବେ ଦେଖା ନଥିଲା ।'

ବାବାଜୀ କ'ଣ ଜାଣିଥିଲେ ସାଗୁଆତି ଅର୍ଥ ମାଂସ । ସେ ସାଗୁଆତିକୁ ଶାଗ ତରକାରୀ ବୋଲି ଭାବି ଖାଇବେ ବୋଲି କହିଥିଲେ । ଆନନ୍ଦ ପଣ୍ଡା ତା'ର ସୁଯୋଗ ନେଲା ।

ଗଂଗଦତ୍ତ କାଳେ କୃଷ୍ଣ ସର୍ପକୁ କହିଥିଲା ବୁଭୁକ୍ଷିତଂ କିଂ ନକରୋତି ପାପଂ । ବାବାଜୀ କିନ୍ତୁ ନିଜ ଉଦାର ଗୁଣରେ ତାକୁ କ୍ଷମା ପ୍ରଦାନ କରିଛନ୍ତି ।

ନିଜର ଦୁଷ୍କର୍ମ ପାଇଁ ଆନନ୍ଦ ପଣ୍ଡା ନିଜ ଗାଲରେ ଚାପୁଡ଼ା ମାରି ଅନୁତାପ କରିଛି ।

ଖାଦ୍ୟ ଅନ୍ୱେଷଣରେ ମଠରେ ପ୍ରବେଶ କରିଛନ୍ତି ବାବାଜୀ । ଦେଖିଛନ୍ତି ଧର୍ମ ନାମରେ ବ୍ୟଭିଚାରର ନଗ୍ନରୂପ । 'ମାଳତୀ', 'କାମୁନୀ' ଭଳି ପରକୀୟା ମାନଙ୍କ ପାଇଁ ସିନା ମଠରେ ପାନାହାରର ବ୍ୟବସ୍ଥା ଅଛି, ଅତିଥି ଅଭ୍ୟାଗତଙ୍କ ପାଇଁ ପ୍ରସାଦ ଟିକିଏ ମିଳିବ କୁଆଡୁ ? ଖାଲି ପେଟରେ ବାବାଜୀ ମଠରୁ ଫେରିଛନ୍ତି ।

ସଂଧ୍ୟା ନଇଁ ଆସିଛି । ନଇକୂଳ ତୋଟା ଭିତରେ ଅଭୁକ୍ତ ବାବାଜୀ ବିଶ୍ରାମ କରୁଛନ୍ତି । ଆସିଛନ୍ତି ରାଧୀ ଏବଂ ଜେମୀ । ସେଇ ଛୋଟିଆ ଗାଁର ଦୁଇ ରୂପଜୀବା । ବାବାଜୀ ତାଙ୍କର ଅଲୌକିକ ଶକ୍ତି ବଳରେ ସେମାନଙ୍କୁ ବ୍ୟାଧି ମୁକ୍ତ କରି ପାରିବେ ଏଇ

ବିଶ୍ୱାସ ନେଇ। ଏହା ମୂଳରେ ରହିଛି ଅପରାହ୍ନର ସେଇ ନିଷ୍ଠୁର ପରିହାସ- ତା ସହିତ ମିଶିଛି କେତେ ପଲ୍ଲବିତ କାହାଣୀ।

ଏତିକିବେଳେ ଆସିଛନ୍ତି ଶିବ ମିତ୍ର ଓ ଜେମସ୍ ଦଲାଇ ବାବାଜୀଙ୍କ ଅଲୌକିକ ବିଭୂତି ବଳରେ ନିଜ ନିଜର ସମସ୍ୟା ସମାଧାନ କରିବାକୁ। କିନ୍ତୁ ରାଧୀ ଜେମୀଙ୍କୁ ଦେଖି ଫେରି ଯାଇଛନ୍ତି।

- ଜେମୀ ରାଧୀ ଯୋଗେ ଯଦି ସେମାନଙ୍କ ଆସିବା ଖବର ପ୍ରଚାରିତ ହୁଏ ତେବେ ଲୋକେ ହସିବେ, ଟାହୁଲି କରିବେ।

ମାଛି ଅନ୍ଧାରରେ ଧୋବ ଧାଉଳିଆ ଦୁଇ ଜଣଙ୍କୁ ଦେଖି ରାଧୀ ଭାବିଛି ସେ ଭୂତ ଦେଖୁଛି। ବିଚାରୀ ଭୟରେ ମୂର୍ଚ୍ଛା ଯାଇଛି।

ମୁହଁରେ ପାଣି ଛାଟି ରାଧୀର ଚେତା ଫେରାଇ ଆଣିଛନ୍ତି ବାବାଜୀ। ସେମାନଙ୍କ ମନରୁ ଭ୍ରାନ୍ତ ଧାରଣା ଦୂର କରିଛନ୍ତି। ଭୂତ ନାହିଁ-ପ୍ରେତ ନାହିଁ-ରୋଗ ବ୍ୟାଧି ସିଦ୍ଧ ପୁରୁଷଙ୍କ କରଣୀରେ ଭଲ ହୁଏ ନାହିଁ ବୋଲି ସେମାନଙ୍କ ମନରେ ବିଶ୍ୱାସ ସୃଷ୍ଟି କରିଛନ୍ତି। କୁସଂସ୍କାରର ଅନ୍ଧକାର ଗର୍ଭରୁ ଆଲୋକର ସନ୍ଧାନ ପାଇ ସେମାନେ ପ୍ରସ୍ଥାନ କରିଛନ୍ତି।

ଏହାପରେ ଆସିଛନ୍ତି ଶିବମିତ୍ର ଓ ଜେମସ୍ ଦଲାଇ ନିଜ ନିଜର ସମସ୍ୟା ନେଇ। ଅଲୌକିକ ଶକ୍ତି ବଳରେ ବାବାଜୀ ତାଙ୍କର ସମସ୍ୟା ସମାଧାନ କରିବାର ଆଶା ନେଇ। କିନ୍ତୁ ଭଣ୍ଡ ବାବାଜୀମାନେ କିପରି ନିରୀହ ଜନତାଙ୍କୁ ବିଭ୍ରାନ୍ତ କରନ୍ତି ତାର କେତେକ ଉଦାହରଣ ଦେଇଛନ୍ତି ବାବାଜୀ ମହାଶୟ। ସେମାନଙ୍କୁ ଏପରି ଭ୍ରାନ୍ତ ଧାରଣାରୁ ନିବୃତ୍ତ ରହିବାକୁ ଉପଦେଶ ଦେଇଛନ୍ତି। ସେମାନଙ୍କ ଅନ୍ଧବିଶ୍ୱାସରେ ଭଟା ପଡ଼ିଛି।

ପରିଶେଷରେ ଯେଉଁ ଆନନ୍ଦ ପଣ୍ଡା ବୁଭୁକ୍ଷୁ ବାବାଜୀଙ୍କ ପ୍ରତି ନିଷ୍ଠୁର ପରିହାସ କରିଥିଲା ସେ ବାବାଜୀଙ୍କୁ ଠାକୁରଙ୍କ ପ୍ରସାଦ ଅର୍ପଣ କରି ନିଜର ଦୋଷ ସ୍ୱୀକାର କରିଛି। ନାଟକ ଏକ କଳାତ୍ମକ ପରିଣତିରେ ପହଞ୍ଚିଛି।

ସୁବଳ ପଟ୍ଟନାୟକଙ୍କ ଠାରୁ ଆରମ୍ଭ କରି ଜେମସ୍ ଦଲାଇ ପର୍ଯ୍ୟନ୍ତ, ପ୍ରତିଟି ଚରିତ୍ର ତତ୍‌କାଳୀନ ସାମାଜିକ ବୈକଲ୍ୟର ଜଣେ ଜଣେ ସାର୍ଥକ ପ୍ରତିନିଧି। ସମାଜ ସଂସ୍କାର ପ୍ରତି ନାଟ୍ୟକାରଙ୍କର ପ୍ରତିଶ୍ରୁତିବଦ୍ଧତା ବାବାଜୀ ଚରିତ୍ରରେ ପ୍ରତିଫଳିତ। ଅନ୍ଧବିଶ୍ୱାସ ଓ ବାମାଚାର ବିରୁଦ୍ଧରେ ଲେଖକଙ୍କର ଆହ୍ୱାନ ବାବାଜୀ କଣ୍ଠରେ ଅନୁରଣିତ। ନାଟକର ଛତ୍ରେ ଛତ୍ରେ ବ୍ରାହ୍ମ ଦର୍ଶନର ଧ୍ୱନି ନିନାଦିତ।

କିନ୍ତୁ ବାବାଜୀ ନାଟକର ସମସ୍ତ ଆଙ୍ଗିକ ବିଭବ ସତ୍ତ୍ୱେ ବୈଚିତ୍ର୍ୟହୀନ କାହାଣୀ

ଦର୍ଶକଙ୍କୁ ପରିପୂର୍ଣ୍ଣ ଆନନ୍ଦ ଦେବାରେ ବାଧକ ହୋଇଥିବ। ଦର୍ଶକମାନେ ଆଶା କରୁଥିବେ ଏକ ବଳିଷ୍ଠ କାହାଣୀ ଏବଂ ସୁଷ୍ଠୁ ପ୍ରତିପାଦନ ଶୈଳୀ।

ରାମ ଶଙ୍କର ରାୟ ଦର୍ଶକମାନଙ୍କର ଆଶା ପୂରଣ କଲେ କାଞ୍ଚି କାବେରୀ ନାଟକରେ।

ସେ ଦିନ ଥିଲା ଗୁଣ୍ଡିଚା ଯାତ୍ରା। ରଥରେ ଛେରା ପହଁରା କରୁଥିଲେ ଗଜପତି ପୁରୁଷୋତ୍ତମ ଦେବ। ଦେବତାର ସେବାକୁ ଚାଣ୍ଡାଳର କାର୍ଯ୍ୟ ବୋଲି ମନେ କଲେ କାଞ୍ଚି ରାଜା। ଚାଣ୍ଡାଳ ହାତରେ କନ୍ୟା ପଦ୍ମାବତୀଙ୍କୁ ଅର୍ପଣ କରିବେ ନାହିଁ ବୋଲି କନ୍ୟାକୁ ନେଇ ପୁରୀରୁ ଫେରିଗଲେ ସେ। ଅପମାନରେ ଜର୍ଜରିତ ପୁରୁଷୋତ୍ତମ ଦେବ ପଦ୍ମାବତୀଙ୍କୁ ଚାଣ୍ଡାଳ ହାତରେ ଅର୍ପଣ କରିବାକୁ ପ୍ରତିଜ୍ଞା କଲେ। ପଦ୍ମାବତୀ ପ୍ରତି ତାଙ୍କର ଅନୁରାଗର ଅଭାବ ନଥିଲା କିନ୍ତୁ ପରିସ୍ଥିତି ତାଙ୍କୁ ବାଧ୍ୟ କରିଥିଲା। ଏଇଠାରୁ ଆରମ୍ଭ ହୋଇଛି ନାଟକୀୟ ଦ୍ୱନ୍ଦ, ନାଟକୀୟ ଉତ୍କଣ୍ଠା।

ପୁରୁଷୋତ୍ତମ ଦେବଙ୍କ ପ୍ରତି ପଦ୍ମାବତୀଙ୍କର ଆକର୍ଷଣ, କନ୍ୟାକୁ ଅନ୍ୟତ୍ର ବିବାହ ଦେବା ପାଇଁ କାଞ୍ଚି ରାଜାଙ୍କର ଇଚ୍ଛା, ପଦ୍ମାବତୀଙ୍କର ପ୍ରତ୍ୟାଖ୍ୟାନ, ପୁରୁଷୋତ୍ତମ ଦେବଙ୍କୁ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଜଗନ୍ନାଥ ବଳଭଦ୍ରଙ୍କର କାଞ୍ଚି ଯାତ୍ରା, କାଞ୍ଚି ଆକ୍ରମଣ ଏବଂ ପ୍ରଥମ ଯୁଦ୍ଧରେ ପରାଜୟ ଆଦି ଘଟଣା ପ୍ରବାହ କାଞ୍ଚିକାବେରୀ କଥାଶିଳ୍ପକୁ ସୁଷମା ମଣ୍ଡିତ କରିଛି।

ପରାଜୟ ଜନିତ ଗ୍ଲାନି ପୁରୁଷୋତ୍ତମ ଦେବଙ୍କୁ ମୁହ୍ୟମାନ କରିଛି। ଏଥର ବିଜୟ ନିଶ୍ଚିତ ବୋଲି ପୁରୁଷୋତ୍ତମ ଦେବଙ୍କୁ ସ୍ୱପ୍ନାଦେଶ ହୋଇଛି। ଏଇ ନିର୍ଣ୍ଣାୟକ ଯୁଦ୍ଧରେ କାଞ୍ଚି ରାଜା ପରାସ୍ତ ହୋଇଛନ୍ତି। କାଞ୍ଚିରୁ ଆସିଛନ୍ତି ପଦ୍ମାବତୀ। ପଦ୍ମାବତୀ ପ୍ରତି ଆକର୍ଷଣ ଏବଂ ରାଷ୍ଟ୍ରୀୟ ସ୍ୱାଭିମାନର ଉଦ୍‌ବେଳନ ରାଜାଙ୍କୁ ବିବ୍ରତ କରିଛି। ଅନ୍ତର୍ଦ୍ୱନ୍ଦର ଏକ ସାର୍ଥକ ରୂପାୟନ ହୋଇଛି ନାଟକରେ।

ପୁଣି ଆସିଛି ଗୁଣ୍ଡିଚା। ରଥରେ ତିନି ଠାକୁର ବିଦ୍ୟମାନ। ସମ୍ମୁଖରେ ଲକ୍ଷ ଲକ୍ଷ ପ୍ରଜା। ଉଭୟେ ରାଷ୍ଟ୍ରୀୟ ସ୍ୱାଭିମାନର ପ୍ରତୀକ। ରାଜା ଛେରା ପହଁରା କରୁଛନ୍ତି। ଚତୁର ମନ୍ତ୍ରୀ ଚାଣ୍ଡାଳ କାର୍ଯ୍ୟରତ ରାଜାଙ୍କ ହାତରେ ପଦ୍ମାବତୀଙ୍କୁ ଅର୍ପଣ କରିଛନ୍ତି- ଶ୍ରୀଗୁଣ୍ଡିଚା ଉପଲକ୍ଷେ ଉପସ୍ଥିତ ଜନତା ଦରବାରରେ- ପ୍ରଭୁ ଜଗନ୍ନାଥଙ୍କ ଶ୍ରୀଛାମୁରେ। ଜନତା ଏହାକୁ ସ୍ୱୀକୃତି ଦେଇଛି। ନାଟକ ଏକ କମନୀୟ ପରିଣତିରେ ପହଞ୍ଚିଛି।

ନାଟକରେ ବଳିଷ୍ଠ କାହାଣୀର ବିକଳ୍ପ ନାହିଁ- ଦ୍ୱନ୍ଦର ବିକଳ୍ପ ନାହିଁ। ନାଟକରେ ଦ୍ୱନ୍ଦ, ଉତ୍କଣ୍ଠା ଓ ବୈଚିତ୍ର୍ୟମୟ କାହାଣୀର ସ୍ରଷ୍ଟା ଭାବରେ ରାମଶଙ୍କର ଥିଲେ ପ୍ରଥମ ଓଡ଼ିଆ ନାଟ୍ୟକାର।

୧୮୮୧ ମସିହା ଫେବୃୟାରି ସାତ ତାରିଖ ଦିନ ଏ ନାଟକଟି କଟକଠାରେ ମଞ୍ଚସ୍ଥ ହୋଇଥିଲା ।

ମଂଚ ଇତିହାସରେ ଦୁଇଟି ଉଲ୍ଲେଖଯୋଗ୍ୟ ଘଟଣା ଘଟିଲା ବିଂଶ ଶତାବ୍ଦୀର ପ୍ରଥମ ପାଦରେ । ୧୯୦୮ ମସିହାରେ ବଳଙ୍ଗାଠାରେ ବନମାଳୀ ପତି ପ୍ରଥମ ବ୍ୟବସାୟିକ ମଂଚ 'ରାଧାକୃଷ୍ଣ ଥିଏଟରସ' ପ୍ରତିଷ୍ଠା କଲେ ଏବଂ ବଳଙ୍ଗାର ନିକଟବର୍ତ୍ତୀ ଅଂଚଳରେ ନାଟକ ମଂଚସ୍ଥ କରିବାକୁ ଲାଗିଲେ ।

ବଳଙ୍ଗା ଆମ ଗାଁଠାରୁ ବେଶିଦୂର ନୁହେଁ । ବାଳକାଟି, ବନମାଳୀପୁର ଅଂଚଳରୁ ଯେଉଁମାନେ ବ୍ୟବସାୟ ଉଦ୍ଦେଶ୍ୟରେ ବଳଙ୍ଗା ଯାଆନ୍ତି ସେମାନେ ଆମ ଗାଁ ବାଟ ଦେଇ ଯାଆନ୍ତି । ଆମ ଗାଁର ପଶ୍ଚିମ ଦିଗକୁ ଯେଉଁ ପ୍ରଶସ୍ତ ଶଗଡ଼ଦଣ୍ଡାଟିଏ ଥିଲା ତାକୁ ବଳଙ୍ଗା ଦାଣ୍ଡ କହନ୍ତି । ଏବେ କେନାଲ ଖୋଳା ହେବାପରେ ତାର ବହୁଳାଂଶ କେନାଲ ଗର୍ଭରେ ଲୀନ ହୋଇଛି । ଯେଉଁ ଅବଶିଷ୍ଟାଂଶଟି ଏବେ ଅଛି ତାକୁ ମଧ୍ୟ ବଳଙ୍ଗା ଦାଣ୍ଡ ବୋଲି କୁହାଯାଉଛି । ବଳଙ୍ଗାରେ ମଂଚ ସ୍ଥାପନ ଏବଂ ନିକଟବର୍ତ୍ତୀ ଅଂଚଳରେ ନାଟକ ପ୍ରଦର୍ଶନର ପ୍ରଭାବ ଆମ ଗାଁରେ ପଡ଼ିଥିବା ସ୍ୱାଭାବିକ ।

ଦ୍ୱିତୀୟ ଘଟଣାଟି ହେଉଛି ଜଣେ ବଳିଷ୍ଠ ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କର ନାଟ୍ୟ ଜଗତରେ ପ୍ରବେଶ ଏବଂ ରାଧାକୃଷ୍ଣ ଥିଏଟରସ୍ ସହିତ ସଂଶ୍ଳିଷ୍ଟି । ଅଶ୍ୱିନୀକୁମାରଙ୍କର ଲେଖନୀରେ ମଂଚ ନାଟକ ଯେପରି ମଥ୍‌ରୁ ପ୍ରଜାପତିରେ ରୂପାନ୍ତରିତ ହେଲା । ଭୀଷ୍ମ, ସେଓଜୀ, କଳାପାହାଡ଼, ଗୋବିନ୍ଦ ବିଦ୍ୟାଧର, କୋଣାର୍କ, ସାଲବେଗ, ଦାସିଆ ବାଉରୀ, ତାଜମହଲ, ଶ୍ରୀମନ୍ଦିର, ରଘୁ ଅରକ୍ଷିତ, ଶ୍ରୀଲୋକନାଥ, ଚଷାଝିଅ, ଜାନକୀ, କଏଦୀ ଆଦି ୪୧ଟି ନାଟକ ରଚନା କରି ସେ ଓଡ଼ିଆ ନାଟକକୁ ଋଦ୍ଧିମନ୍ତ କରିଛନ୍ତି ।

ମୁଁ ପିପିଲି ମାଇନର ସ୍କୁଲରେ ପଢୁଥିବା ସମୟରେ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ପିପିଲିଠାରେ ଶ୍ରୀଲୋକନାଥ ଅଭିନୟ କରୁଥା'ନ୍ତି । ଗାଁ ଗହଳିରୁ ଶଗଡ଼ର ଧାଡ଼ି ଲମ୍ବିଯାଏ ଶ୍ରୀଲୋକନାଥ ଦେଖିବାକୁ । ମୁଁ ଏ ନାଟକ ଦେଖିଛି । ପରବର୍ତ୍ତୀ ସମୟରେ ଏହା ଯେତେବେଳେ ଚଳଚ୍ଚିତ୍ରରେ ରୂପାୟିତ ହେଲା ସେତେବେଳେ ମଧ୍ୟ ଏହାର ଲୋକପ୍ରିୟତା ଅତୁଳନୀୟ ଥିଲା । 'ଶ୍ରୀମନ୍ଦିର' କେବଳ ଓଡ଼ିଶାରେ ଜନପ୍ରିୟତା ହାସଲ କରି ନଥିଲା ଏହା ବଙ୍ଗଳାରେ ଅନୂଦିତ ହୋଇ କଲିକତାର ଷ୍ଟାର ଥିଏଟରରେ ଦୀର୍ଘଦିନ ବ୍ୟାପୀ ଅଭିନୀତ ହୋଇଥିଲା । ଜନମାନସକୁ ବାନ୍ଧି ରଖିବାର ବିପୁଳ ସମ୍ଭାର ଥିଲା ଅଶ୍ୱିନୀ କୁମାରଙ୍କ ନାଟକରେ । ଦ୍ୱନ୍ଦ୍ୱ ଏବଂ ଉତ୍କଣ୍ଠାର ପରିଚ୍ଛନ୍ନ ରୂପ, ଚରିତ୍ର ମାନଙ୍କର ଅନ୍ତଃ ସୌନ୍ଦର୍ଯ୍ୟ ଓ ବହିଃ ପ୍ରକୃତିର ସମନ୍ୱିତ ରୂପ, ଆବେଗ ଏବଂ ଜାତୀୟତା ବୋଧରେ ରସାଣିତ ନାଟକ ଗୁଡ଼ିକ ଗଭୀର ପ୍ରଭାବ ବିସ୍ତାର କରିଥିଲା ।

ଅଶ୍ୱିନୀ କୁମାରଙ୍କ ପୂର୍ବରୁ ଶ୍ରୀ କାମପାଳ ମିଶ୍ର ମଧ୍ୟ ପୌରାଣିକ ନାଟକ ରଚନାରେ ମନୋନିବେଶ କରି ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ। ଅଶ୍ୱିନୀ କୁମାରଙ୍କ ସମୟରେ ପୌରାଣିକ ଓ ଐତିହାସିକ ନାଟକ କ୍ଷେତ୍ରରେ ଥିବା ଅଭାବ ଦୂରୀଭୂତ ହୋଇଥିଲେ ମଧ୍ୟ ସାମାଜିକ ନାଟକ କ୍ଷେତ୍ରରେ ବିଶେଷ ଅଗ୍ରଗତି ହୋଇପାରି ନଥିଲା। ଓଡ଼ିଶାର ଦର୍ଶକ ମଣ୍ଡଳୀ ଯେପରି ଏହାର ପୂର୍ଣ୍ଣାଙ୍ଗ ବିକାଶ ପାଇଁ କାଳୀଚରଣ ପଟ୍ଟନାୟକ ଓ ରାମଚନ୍ଦ୍ର ମିଶ୍ରଙ୍କୁ ଅପେକ୍ଷା କରୁଥିଲେ। ସେମାନେ ସାମାଜିକ ନାଟକର ଗୋଟିଏ ବିରାଟ କୋଣାର୍କ ସୃଷ୍ଟି କଲେ। ସେମାନଙ୍କ ସୃଷ୍ଟିରେ ସମାଜର ନିକ୍ଷେପିତମାନେ- ଅପାଙ୍କ୍ତେୟ ମାନେ ମଂଚ ଉପରେ ଠିଆ ହୋଇ ସେମାନଙ୍କର ମାନବତାର କାହାଣୀ କହିଲେ- ପୁଣି କହିଲେ ସେମାନଙ୍କର ହସ କାନ୍ଦର କାହାଣୀ। ଗ୍ରାମାଞ୍ଚଳର ଦର୍ଶକମାନେ ସେଇ ଚରିତ୍ରମାନଙ୍କ ମଧ୍ୟରେ ନିଜକୁ ଆବିଷ୍କାର କଲେ। ନାଟକ ସାର୍ବଜନୀନତା ଲାଭ କଲା। ସହଜ ସଂଳାପ, ସରଳ ବେଶଭୂଷା, ସ୍ୱଳ୍ପ ଖର୍ଚ୍ଚ ହେତୁ ନାଟକ ପରିବେଷଣ ସହଜ ହେଲା। କଣ୍ଟେ, ଝଟା ଆଡ଼େଇ, କିଆ ଗୋହରୀ, ନଈ ନାଳ ଡେଇଁ ନାଟକ ଗାଁ ଗହଳିକୁ ପ୍ରବେଶ କଲା, ସୌଖୀନ ମଂଚ ମାଧ୍ୟମରେ।

ଆମ ଷ୍ଟେଜ୍‌ରେ ରାସର ଆବେଦନ ମଳିନ ପଡ଼ି ଆସୁଥିଲା ବୋଧେ। ଦର୍ଶକମାନେ ନୂତନ ସ୍ୱାଦର ନାଟକଟିଏ ଖୋଜୁଥିଲେ ଅବା। ସୀତା ବିବାହ ନାଟକ ମଞ୍ଚସ୍ଥ ହେଲା ଆମ ଗାଁରେ। ସେତେବେଳକୁ ଗାଁ ଦାଣ୍ଡରୁ ମଂଚ ଅପସାରିତ ହୋଇ ନଥାଏ।

୧୮୯୯ ମସିହାରେ ଶ୍ରୀକାମପାଳ ମିଶ୍ର ଏ ନାଟକ ଲେଖିଥିଲେ। ଓଡ଼ିଆ ନାଟକର ଆଦିପର୍ବରେ ସେ ଥିଲେ ଜଣେ ପ୍ରତିଭାଧର ନାଟ୍ୟକାର। ନୂତନ ଶୈଳୀର ପ୍ରୟୋଗ ପାଇଁ ତାଙ୍କ ନାମ ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇଛି। ରାମାୟଣର କଥା କାହାକୁ ଅଜଣା ନାହିଁ। କିନ୍ତୁ ଏ ନାଟକରେ ଦର୍ଶକମାନେ ଅତିମାନବିକ ଚରିତ୍ର ମଧ୍ୟରୁ ସରଳ ମଣିଷର ସନ୍ଧାନ ପାଇ ପାରୁଥିଲେ। ସେଥିପାଇଁ ଏ ନାଟକଟି ଗାଁ ଗହଳିରେ ବିଶେଷ ଲୋକପ୍ରିୟତା ଅର୍ଜନ କରି ପାରିଥିଲା।

ସୀତା ବିବାହ ନାଟକରେ ଯଦୁ ଦାଦି ଜନକ ଭୂମିକାରେ, ବନମାଳୀ ଭାଇ ରାମ ଭୂମିକାରେ, ଜୟି ଭାଇ ଲକ୍ଷ୍ମଣ ଭୂମିକାରେ ଅଭିନୟ କରୁଥାନ୍ତି। ରାମ, ଶିବ ଧନୁକୁ ଭାଙ୍ଗିବାକୁ ଥରେ, ଦିଥର, ତିନିଥର ଚେଷ୍ଟା କଲେ। ଭାଙ୍ଗିଲା ନାହିଁ। ମଂଚ ଉପରେ ଲକ୍ଷ୍ମଣକୁ ପଚାରି ଦେଲେ- 'ହଇରେ ଜୟି, ଏ ଧନୁଟା କାହିଁକି ଭାଙ୍ଗୁ ନାହିଁ।'

ପାଠକ ଜଣେ, ଦର୍ଶକ ଅନେକ। ଦୋଷ ତ୍ରୁଟି ପାଠକ ଆଖିକୁ ଏଡ଼ାଇ ଯାଇପାରେ କିନ୍ତୁ ନାଟକର ପ୍ରତ୍ୟେକ ତ୍ରୁଟି ଦର୍ଶକ ଆଖିରେ ପଡ଼ିବ ହିଁ ପଡ଼ିବ।

ଦର୍ଶକମାନେ ଏ ସଂଳାପଟି ଶୁଣି ହସିଲେ। ଯା ଭିତରେ ବହୁବର୍ଷ ଅତୀତ ହୋଇଛି। ଏବେ ମଧ୍ୟ ସେଇ କଥାକୁ ମନେ ପକାଇ ଗାଁରେ ହାସ୍ୟରୋଳ ସୃଷ୍ଟି ହୁଏ।

ଏହାର ବହୁବର୍ଷ ପରେ।

ଗୋଟିଏ ଦୃଶ୍ୟରେ ଅଭିନେତା ହାତ ଘଡ଼ିକୁ ଚାହିଁବ। 'ଟେନ ଥାଟି' ହୋଇଗଲା ବୋଲି କହିବ। ତର ତର ହୋଇ ବାହାରି ଯିବ। ଏ ଭୂମିକାଟି ଚିତ୍ତର ଥିଲା। ଘଣ୍ଟା ଦେଖିଲା। ଟେନ୍ ଥାଟି କହିବ କ'ଣ 'ଥାଟି ଟେନ୍' କହିଦେଲା କି ! ଆଉ ଯାଏ କୁଆଡ଼େ ? ଭଗିଭାଇ ଷ୍ଟେଜ୍ ଭିତରେ ରାଗରେ ଲାଲ ପଡ଼ିଗଲେଣି। ଷ୍ଟେଜ୍‌ରୁ ଆସିଲେ ମାଡ଼ ଭରଣକ ପାହୁଲାଏ ହେବ। ତାଙ୍କ ଡରରେ ଉଇଙ୍ଗସ୍ କରେ କରେ ଷ୍ଟେଜ୍ ବାହାରକୁ ଦୌଡ଼ି ପଳାଇବାକୁ ତାକୁ ତର ସହିଲା ନାହିଁ। ତା'ର ପରବର୍ତ୍ତୀ ସିନ୍ ଆସିବା ପର୍ଯ୍ୟନ୍ତ ବାହାରେ ବାହାରେ ବୁଲିଲା।

ଶୁଣିଛି ସୀତା ବିବାହ ପରେ ଧ୍ରୁବ ନାଟକ ଗାଁ ଦାଣ୍ଡରେ ଅଭିନୀତ ହୋଇଥିଲା। ମଝିରେ ମଝିରେ ରାସ ମଧ୍ୟ ଅଭିନୀତ ହେଉଥାଏ।

କୃଷ୍ଣ ଭାଇନା କହୁଥିଲେ ୧୯୪୨ ମସିହାରେ ଦାଣ୍ଡମୁକୁନ୍ଦ ପୁରରେ ତୁଳସୀ ଦାସ ଅଭିନୀତ ହୋଇଥିଲା। ବହିଟି ଲେଖିଥିଲେ ଦାମୋଦର ଦାଶ। ବହି ଛପା ହୋଇ ନଥିଲା। ପାଣ୍ଡୁଲିପିଟି ଆଣି ସେଇ ବର୍ଷ ଆମ ଗାଁରେ ମଞ୍ଚସ୍ଥ ହେଲା ତୁଳସୀ ଦାସ। ଉଭୟ ମଂଚରେ କୃଷ୍ଣ ଭାଇନା ଅଭିନୟ କରିଥିଲେ।

ନିଜ ପତ୍ନୀଙ୍କ ପ୍ରେରଣାରେ ସ୍ତ୍ରୈଣ ତୁଳସୀ ଦାସ ସନ୍ଥ ତୁଳସୀ ଦାସରେ ପରିଣତ ହେବାର ରୋମାଞ୍ଚକର କାହାଣୀଟି ଏଥିରେ ବର୍ଣ୍ଣିତ ହୋଇଥିଲା। ସନ୍ଥ ତୁଳସୀ ଦାସ ପୁରୀ ଆସି ଜଗନ୍ନାଥ ବଳଭଦ୍ର ସୁଭଦ୍ରାଙ୍କୁ ରାମ ଲକ୍ଷ୍ମଣ ସୀତା ରୂପରେ ଦେଖିଥିଲେ।

ଯୋହି ରାମ ସୋହି ଜଗଦୀଶା
ଦୀନ ହୀନ ଅନନ୍ତ ପର୍ବତ ଶେଷା
ଶେଷଭୟେ ଲଛମନ୍ ଅନୁଚାରୀ
ଭଦ୍ରା ସୋଇ ସିଅ ଜନକ କୁମାରୀ।

ତା'ର ଏକ ମନୋଜ୍ଞ ଆଲେଖ୍ୟ ସ୍ଥାନିତ ହୋଇଗଲା ପାଣ୍ଡୁଲିପିରେ।

ଏତେବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇ ଯାଇଥିଲା। ଆଖି ପିଛୁଡ଼ାକେ ସବୁ ଜିନିଷ ବଜାରରୁ ଉଭେଇ ଗଲା। ପୁରୀରୁ ସରଦେଇପୁର (ଉତ୍ତରା ପାଖ ଗୋଟିଏ ଗାଁ) ଗୋଟିଏ ବସ୍ ଯିବା ଆସିବା କରେ। ସେ ପେଟ୍ରୋଲ ଅଭାବରେ କୋଇଲାରେ ଚାଲିଲା। ଗାଁ ଗହଳିରେ ଚିନି, କିରାସିନି, ଡିଆସିଲି ସାତ ସପନ ହେଲା। ଅନ୍ୟବେଳେ ଚିନି ନହେଲେ ଚଳେ କିନ୍ତୁ ରୋଗ ବଇରାଗରେ ଚିନି ପାଣି

ଟିକିଏ ଦରକାର। ଘରେ ଘରେ ପାଳି କର, ବାତ କର ଭୋଗୁଥିବା ରୋଗୀ। ଚିନି ଟିକିଏ ନ ହେଲେ ନ ଚଳେ। କିରାସିନିର ବିଶେଷ ଦରକାର ନାହିଁ। ସଂଜ ବୁଡ଼ିବା ଆଗରୁ ଖିଆପିଆ ସରେ। କିନ୍ତୁ ଗୁହାଳେ ଗୋରୁ ଗାଈ କାମ ପାଇଁ, ପୁଣି ରାତି ବିକଳି ସମୟ ଅସମୟ ପାଇଁ ଘରେ ଟିକିଏ କିରାସିନି ରଖିବା ଦରକାର। ଗୋଟିଏ ଘରେ ଚୂଲୀ ଜଳିଲେ ପାଳ ଲୁଣ୍ଡାରେ ରଡ଼ ନିଆଁ ଦିଖଣ୍ଡ ନେଇ ଆସିଲେ ଅନ୍ୟ ଘରେ ଚୂଲୀ ଲାଗେ। କିନ୍ତୁ ରାତି ଅଧରେ କ'ଣ ଦରକାର ପଡ଼ିଲେ ଡିବିଟିଏ କି ଦୀପଟିଏ ଜାଳିବାକୁ ହେଲେ ଡିଆସିଲିଟିଏ ଦରକାର। ରାତି ଅଧରେ କାହା ଘରକୁ ଯିବ ଡିଆସିଲି ମାଗିବାକୁ ?

ଏତିକିବେଳକୁ ଶୁଣାଗଲା ଜାପାନୀମାନେ ଓଡ଼ିଶା ଉପକୂଳରେ ବୋମା ପକାଇବେ। ଆକାଶ ପଥରେ ଜାପାନୀ ମାନେ ଆସିବାରେ ପ୍ରତିବନ୍ଧ କିଛି ନାହିଁ। ଯୁଦ୍ଧ ଲାଗିଛି ଯେତେବେଳେ ବୋମା ପଡ଼ିପାରେ। ସତକୁ ସତ କଲିକତାରେ ଜାପାନୀମାନେ ବୋମା ପକାଇ ଦେଲେ।

ଆମ ଗାଁ ଏବଂ ପାଖାପାଖି ଗାଁର ବହୁଲୋକ କଲିକତାରେ ଥିଲେ। ସବୁଥର ସେମାନେ ଗାଁକୁ ଆସିବାବେଳେ ଅତିକମ୍‌ରେ ଗାଁ ପିଲାଙ୍କ ପାଇଁ ଦୁଇ ତିନି ପ୍ୟାକେଟ୍ ଖଜୁରି କୋଳି, ନିଜ ଘର ଏବଂ ସାଇ ପଡ଼ିଶାମାନଙ୍କ ପାଇଁ ଦୁଇ ତିନି ଡଜନ ଚିଡ଼ିଆ ମାର୍କା ଡିଆସିଲି, ଗୋଟାଏ ଲଣ୍ଠନ ଆଣିଥାନ୍ତି। ପରବିନା ପର୍ବୀ କଳ୍ପନା କରାଯାଇ ପାରେ କିନ୍ତୁ ଖଜୁରି କୋଳି, ଡିଆସିଲି ଏବଂ ଲଣ୍ଠନ ବିନା କଲିକତି ଫେରନ୍ତା ଚିନ୍ତା କରାଯାଇ ପାରେନା। କିନ୍ତୁ ସେଥର ସେମାନେ ଖାଲି ହାତରେ ପଳାଇ ଆସିଲେ। ଆପେ ବଂଚିଲେ ବାପର ନାଁ। ଖଜୁରି କୋଳି, ଲଣ୍ଠନ, ଡିଆସିଲି କଥା ପଚାରେ କିଏ ? ପିନ୍ଧା ଲୁଙ୍ଗି ଖଣ୍ଡେ ବି ଆଣିବାକୁ ସମୟ ନାହିଁ। ବସିବା ଥାନରୁ ଉଠି ଆସିଲେ। ଯୁଦ୍ଧ ସଂପର୍କରେ ଦେଖା କଥା କମ୍ ଶୁଣା କଥା ବେଶି ସତ ଫଳେଇ ଗପିଲେ। କାନ ବାଟେ କଥା ଚାଲେ। ଦିନ କେଇଟିରେ ଗାଁ ଗାଁରେ କୋକୁଆ ଭୟ ସୃଷ୍ଟି ହେଲା।

ମଝିରେ ମଝିରେ ଗୋଟାଏ ଉଡ଼ାଜାହାଜ ଚକର କାଟି ଉଡ଼ିଯାଏ। ଗାଁରେ ହାଲହୁଲାଳି ପଡ଼ିଯାଏ- ଏଇ ଜାପାନୀ ଜାହାଜ ଆସିଲା। ବୋମା ପକାଇବ। ଲୋକେ କବାଟ କିଳି ପିଲା ଛୁଆଙ୍କୁ କୋଳରେ ଯାକି ଘର କଣେ ପଶନ୍ତି, ଉଡାଜାହାଜର ସ୍ୱର ପବନରେ ମିଳାଇ ଯିବା ପର୍ଯ୍ୟନ୍ତ।

ସେଇ ଯୁଦ୍ଧର ଘନଘଟା ଭିତରେ ଗାଁରେ ଗୋଟିଏ କଂଟ୍ରୋଲ ଦୋକାନ ସରକାର ଖୋଲିଲେ, ଚିନି, କିରାସିନି ଯୋଗାଇ ଦେବାକୁ। ବିଶି ଭାଇ, ସଦା ଅଜା ହେଲେ କଂଟ୍ରୋଲ ଡିଲର। ପ୍ରେସିଡେଣ୍ଟ ଭାବରେ ସାଧାରଣ ବଣ୍ଟନ ବ୍ୟବସ୍ଥାର ଦାୟିତ୍ୱ ପଡ଼ିଲା ବାପାଙ୍କ ଉପରେ। ପରମିଟ୍ ଦେବା ଦାୟିତ୍ୱ ତାଙ୍କର।

ବାପା ଆଠଟା ବେଳକୁ ପିପିଲି ଯାଆନ୍ତି । ଗାଁ ମୁଣ୍ଡକୁ ନିତ୍ୟକର୍ମ କରିବାକୁ ଯିବା ବେଳକୁ ପ୍ରତିଦିନ ୩୦/୪୦ ଜଣ ଲୋକ ଅପେକ୍ଷା କରିଥିବେ ପରମିଟ୍ ନେବା ପାଇଁ । ବାପା ଗାଁ ମୁଣ୍ଡ ବରଗଛ ତଳେ ବାଲି ଉପରେ ବସନ୍ତି । କିଆବୁଦା ମୂଳରୁ ସଂଗ୍ରହ ହୁଏ କିଛି ହେମକାଦର ପତ୍ର ଏବଂ ଗୋଟିଏ ଦୁଧକୋଳି କଣ୍ଟା । ସେଥିରେ ଲେଖାହୁଏ ପରମିଟ୍- 'ସଦାନନ୍ଦ, ପତ୍ରବାହକଙ୍କୁ ଏତିକି ଚିନି-ଏତିକି କିରାସିନି ଦେବ ।' ବାପା ନଥିବା ବେଳେ ଜଣେ ଦିଜଣ ଆସନ୍ତି ଚିନି କିରାସିନି ପାଇଁ । ମୁଁ ହେମକାଦର ପତ୍ରରେ ପରମିଟ୍ ଲେଖିଦିଏ- ଠିକ୍ ଯେପରି ବାପା ଲେଖନ୍ତି । ଯଦି ଦୈବାତ୍ ସଦା ଅଜାଙ୍କ ସହିତ ଦେଖାହୁଏ ତେବେ ସେ ମୁରୁକି ହସି ଚଷମା ଉପରେ ଚାହିଁ କହନ୍ତି- 'ଆରେ, ବାପା ନ ଥିବାବେଳେ ଯଦି କିଏ ଆସିବେ, ତାଙ୍କ ପାଇଁ ପରମିଟ୍ ଦେଇ ଦଉଥିବୁ ।' ଏ ପରିହାସ ମୁଁ ବୁଝିପାରେ ନାହିଁ । ପରେ ଯେତେବେଳେ ଜାଣିଲି ଯେ ମୁଁ ଧରା ପଡ଼ି ଯାଉଛି, ଆଉ ପରମିଟ୍ ଲେଖିଲି ନାହିଁ । ସଂଧ୍ୟାବେଳକୁ ବାପା ପିପିଲିରୁ ଫେରିଲେ ବିଶିଭାଇ କଂଟ୍ରୋଲ କିନିଷର ହିସାବ ଦିଅନ୍ତି, ହେମକାଦର ପତ୍ର ସବୁ ସାଥିରେ ଆଣିଥାନ୍ତି, ସେଗୁଡ଼ିକୁ ବାପା ଆନୁଷ୍ଠାନିକ ପରମିଟ୍‌ରେ ପରିଣତ କରନ୍ତି । ରବିବାର ଓ ଛୁଟିଦିନ ମାନଙ୍କରେ ଭିଡ଼ ଜମେ ଆମ ଦୁଆର ମୁହଁରେ । ସେଦିନ କାଗଜରେ ପରମିଟ୍ ଲେଖାହୁଏ । ଅଧ ଛଟାଙ୍କିଏ କିରାସିନି, ଛଟାଙ୍କିଏ ଚିନି ପାଇଁ ଲୋକଙ୍କର କି ଆକୁଳତା ମୁଁ ଆଖିରେ ଦେଖିଛି ।

ଟଙ୍କାରେ ଧାନ ୧୬ ଗୌଣୀ କିନ୍ତୁ କିଣିବାକୁ ଲୋକଙ୍କ ପାଖରେ ପଇସା ନାହିଁ । ଲୋକେ ଗୁଆ ଅଭାବରେ ତାଳ ମଂଜି, ଖଜୁରି ମଂଜି ପାନରେ ଖାଇଲେ । ଗରିବ ଲୋକଙ୍କ ଘରେ ଦି ଦିନରେ ଦିନେ ଚୂଲୀ ଜଳିଲା ନାହିଁ । ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକେ ପ୍ରଥମେ ଡିଙ୍କି, ତାପରେ ବାସନକୁସନ ବନ୍ଧା ଦେଇ କିଛିଦିନ ଗୁଜୁରାଣ ମେଣ୍ଟାଇଲେ । ତା'ପରେ ଜମିବାଡ଼ି ବନ୍ଧା ପକାଇଲେ ନହେଲେ ବିକ୍ରି କଲେ । ଦିନ କେଇଟି ପରେ ସେମାନେ ମଧ୍ୟ ଦି ଓଳିରେ ଓଳିଏ ଉପାସ ରହିଲେ ।

ଯୁଦ୍ଧ ଜନିତ ଅଭାବ ଅନାଟନର ପ୍ରଭାବ ଆମ ପରିବାର ଉପରେ ପଡ଼ି ନଥିଲା । କିନ୍ତୁ ମୋ ପାଇଁ ବୋଉ ସଦାବେଳେ ବ୍ୟସ୍ତ ହେଉଥିଲା । ମୁଁ ତା'ର ଗୋଟିଏ ବୋଲି ପୁଅ । ପୁଣି ପୁଅଟିଏ ପାଇବାର ଆଶା ଯେତେବେଳେ ସେ ହରାଇ ବସିଥିଲା ସେତେବେଳେ ମୋର ଜନ୍ମ । ବୋମା ପଡ଼ିଲେ ମୁଁ ମରିଯିବି ଏଇ ଭୟରେ ସେ ସଦାବେଳେ ଆତଙ୍କିତ ହେଉଥିଲା । ତାର ମନବଳ ବୃଦ୍ଧି କରିବା ପାଇଁ ବାପା ଆମ ବାଡ଼ିତଳେ ଗୋଟାଏ ବଡ଼ ଟ୍ରେଞ୍ଚ ଗାତ ଖୋଳିଥାନ୍ତି । ଉଡ଼ାଜାହାଜ ଶବ୍ଦ ଶୁଣିଲେ ସେ ମୋତେ ନେଇ ତା ଭିତରେ ପଶେ ।

ମୋତେ ୫ ବର୍ଷ ପୁରିଲେ ଲିଂଗରାଜ ଠାକୁରଙ୍କ ପାଖରେ ମୋ ମୁଣ୍ଡ ଉପରେ ଜାଗର ଜାଳିବ ବୋଲି ବୋଉ ମାନସିକ କରିଥିଲା । ୧୯୪୩ ମସିହାରେ ମୋତେ

ପାଞ୍ଚ ବର୍ଷ ପୁରିଲା। ବୋଧେ ୧୯୪୫ ମସିହା ହେବ ବୋଉ, ମୁଁ ଏବଂ ଗାଁର ଆଉକଣେ କିଏ ପୁରୁଷ ଲୋକ ଶଗଡ଼ରେ ବସି ସଂଧ୍ୟାର ବହୁ ପୂର୍ବରୁ ଭୁବନେଶ୍ୱରରେ ପହଞ୍ଚିଲୁ। ଆମର ଶଗଡ଼ ଯେଉଁଠି ଫିଟା ହେଲା, ସେଠାରେ ଟ୍ରକ ଗୁଡ଼ିକ ବାହାରେ ଛିଡ଼ା ହୋଇଥାଏ। ପୋଲିସ ଟାଉନ୍ ଭିତରକୁ ଟ୍ରକ୍ ଛାଡ଼ୁ ନଥାଏ। ବୋଉ ଆଗରୁ ଟ୍ରକ୍ ଦେଖି ନଥିଲା। ଟ୍ରକ୍‌ର ଡାଲାକୁ ଦେଖି ତାର ମନେହେଲା କାପାର୍ନୀମାନେ ବୋମା ପକାଇ ମଟର ପୋଡ଼ି ଦେଇଛନ୍ତି, ସେଇ ମଟର ଏଠି କମା ହୋଇଛି। ସେଇଦିନଠାରୁ ସେ ଆଉ କାହା ସହିତ କଥାବାର୍ତ୍ତା ହେଲା ନାହିଁ। ଚୁପ୍ ହୋଇ ରହିଲା। ୧୯୪୬ ମସିହା ସୁନିଆଁ ଦିନ ମାତ୍ର ୪୨ ବର୍ଷ ବୟସରେ ସେ ସେଇ ଅବସ୍ଥାରେ ଶେଷ ନିଶ୍ୱାସ ତ୍ୟାଗ କଲା। ଆମ ପରିବାରଟି ଉଚ୍ଛନ୍ନ ହୋଇଗଲା। ଇମିତି କେତେ ଯେ ପରିବାର ଯୁଦ୍ଧର ଶକୁନ ଛାଇ ତଳେ ଧ୍ୱଂସ ପାଇଥିବେ ତା'ର ହିସାବ କେହି ରଖି ନାହାନ୍ତି।

ଯୁଦ୍ଧର ଘନଘଟା, ଅଭାବ, ଅନାଟନ, ଭୟ, ଆତଙ୍କ ଭିତରେ କିନ୍ତୁ ଏଇ ଛୋଟିଆ କଳାପ୍ରାଣ ଗାଁଟି ନାଟକକୁ ଛାଡ଼ି ପାରି ନଥିଲା। ଏତେବେଳକୁ ପ୍ରଥମ ପୀଢ଼ିର ଉଦ୍ୟୋକ୍ତା ଉଦୟନାଥ ମହାନ୍ତି ଅପସରି ଯାଇଥିଲେ। ଗାଁ ଦାଣ୍ଡରୁ ଷ୍ଟେଜ୍ ଉଠିଯାଇଥିଲା ମେଳନ ପାଖ ପଡ଼ିଆକୁ- ଯେଉଁଠି ଏବେ ଅପର ପ୍ରାଇମେରି ସ୍କୁଲର ଲମ୍ବା ଆଠ ବଖରିଆ ଘରଟି ଠିଆ ହୋଇଛି। ଚାଦର ପରିବର୍ତ୍ତେ ସିନ୍ ଟଣା ହେଉଥିଲା। ନୂଆ ପୀଢ଼ିର ଉଦ୍ୟୋକ୍ତା ଥିଲେ କୟିଭାଇ, ଭଗିଭାଇ, ସୁଦିଭାଇ, ବିଶିଭାଇ, କାଶୀଭାଇ, ଭ୍ରମରଭାଇ। ଏଇ ସମୟ ଭିତରେ ମୁଁ ରାସ ଭିନ୍ନ ତାରା ବାଈ, ରଘୁ ଅରକ୍ଷିତ, ବିଲ୍ୱ ମଙ୍ଗଳ, ହରିଶ୍ଚନ୍ଦ୍ର, ସୁଦାମା, ଶକୁନ୍ତଳା ଦେଖିଥିବା ଅତ୍ୟନ୍ତ ସ୍ପଷ୍ଟ ଭାବରେ ମନେଅଛି। ତାରାବାଈରେ ଦେବେନ୍ଦ୍ର ଭାଇ, ରଘୁ ଅରକ୍ଷିତ, ବିଲ୍ୱମଙ୍ଗଳ, ହରିଶ୍ଚନ୍ଦ୍ର ଓ ସୁଦାମାରେ କାଶୀଭାଇ ଓ ବିଶିଦାଦିଙ୍କୁ ଏବଂ ଶକୁନ୍ତଳାରେ କୟିଭାଇ ଓ ଲୋକି ଭାଇଙ୍କୁ ପାର୍ଟ କରୁଥିବାର ଦେଖିଛି।

ରଘୁ ଅରକ୍ଷିତ (୧୯୩୪), ବିଲ୍ୱମଙ୍ଗଳ (୧୯୨୯) ଓ ସୁଦାମା (୧୯୨୮) ତିନିଗୋଟି ନାଟକର ରଚୟିତା ହେଉଛନ୍ତି ରାମଚନ୍ଦ୍ର ମହାପାତ୍ର। ଜଣେ ଭକ୍ତି ରସାତ୍ମକ ନାଟ୍ୟକାର ଭାବରେ ସେ ଯଥେଷ୍ଟ ପ୍ରସିଦ୍ଧି ଲାଭ କରିଥିଲେ।

ସରଳ ସଂସ୍କୃତ ଭାଷାରେ ଶ୍ରୀକୃଷ୍ଣଙ୍କ ମହିମାଗାନ କରିବାରେ ବିଲ୍ୱମଙ୍ଗଳ ଥିଲେ ଜଣେ ଅଦ୍ୱିତୀୟ କବି। ତାଙ୍କର ରଚନାରୁ ଗୋଟିଏ ପଦ ମନେପଡ଼ୁଛି-

ବ୍ରଜେ ପ୍ରସିଦ୍ଧ ନବନୀତ ଚୌରମ୍
ଗୋପାଙ୍ଗନାନାଂ ଦୂକୂଳଷ୍ଣ ଚୋର
ଅନେକ କନ୍ମାର୍ଜିତ ପାପ ଚୋରମ୍
ଚୌରାଗ୍ରଗଣ୍ୟ ପୁରୁଷଂ ନମାମି।

ଏଇ ମହାନ୍ କବିଙ୍କର ଚିନ୍ତାମଣୀ ବେଶ୍ୟା ସହିତ ଛଳ ଛଳ ପ୍ରେମକାହାଣୀକୁ ନେଇ ନାଟକର ସୃଷ୍ଟି ।

ସୁଦାମା ନାଟକଟି ପୁରାଣ ବର୍ଣ୍ଣିତ କୃଷ୍ଣ ସୁଦାମାଙ୍କର ଅଭେଦ୍ୟ ବଂଧୁ ପ୍ରୀତିର ଆଲେଖ୍ୟ ।

'ରଘୁ ଅରକ୍ଷିତ' ଦାର୍ଢ୍ୟତା ଭକ୍ତିର କାହାଣୀ ଉପରେ ଗଢ଼ି ଉଠିଥିବା ଅନ୍ୟ ଏକ ଭକ୍ତି ରସାତ୍ମକ ନାଟକ । ରଘୁର ଦାରିଦ୍ର୍ୟ, ଦାରିଦ୍ର୍ୟ ଯୋଗୁଁ ତାକୁ ହତ୍ୟା କରି ତା'ର ସ୍ତ୍ରୀକୁ ଅନ୍ୟତ୍ର ବିବାହ ଦେବା ପାଇଁ ଶ୍ୱଶୁର ଘର ଚକ୍ରାନ୍ତ, ତାକୁ ହତ୍ୟା କରିବା ପାଇଁ ଶ୍ୱଶୁର ଘର ଦେଇଥିବା ବିଷପିଠାକୁ ଜଗନ୍ନାଥଙ୍କୁ ଭୋଗ ଦେଇ ରଘୁ ଅରକ୍ଷିତର ମର୍ମବେଦନା ଆଦି ବହୁ ରୋଚକ ଘଟଣାରେ ନାଟକଟି ଗଢିମନ୍ତ ।

ହରିଶ୍ଚନ୍ଦ୍ର ନାଟକ ସଂପର୍କରେ ସ୍ମୃତିଚାରଣ କରି ଉପେନ୍ଦ୍ର ଭାଇ କହନ୍ତି, ସେ ସେତେବେଳେ ରସୁଲକୁଣ୍ଡାରେ ଶିକ୍ଷକତା କରୁଥାନ୍ତି । ଡାକଯୋଗେ ଦୁର୍ବାସା ପାର୍ଟଟି ପହଞ୍ଚିଲା । ଷ୍ଟେଜ୍ ରିହର୍ସଲ ପୂର୍ବଦିନ ଟେଲିଗ୍ରାମ ପାଇଲେ,- 'କାଲି ଷ୍ଟେଜ୍ ରିହର୍ସଲ, ଶୀଘ୍ର ଆସ ।' ଟ୍ରେନ୍ ଚଢ଼ି ଆସି ଭୁବନେଶ୍ୱର ଷ୍ଟେସନରେ ପହଞ୍ଚିଲା ବେଳକୁ ରାତି ନଇଁ ଆସିଲାଣି ।

ସେତେବେଳକୁ ଲୁଇସ୍‌ରୋଡ୍ ତିଆରି ହୋଇ ନଥାଏ । ଆମ ଗାଁକୁ ଆସିବାକୁ ହେଲେ ଭୁବନେଶ୍ୱର ମାଉସୀମା ମନ୍ଦିର ଦେଇ ଆସିବାକୁ ହୁଏ । ମାଉସୀମା ମନ୍ଦିର ଚାରିପାଖେ ଘଂଚ ଜଂଗଲ । ଭୁବନେଶ୍ୱର ରେଲ ଷ୍ଟେସନରେ ରାତିରେ ଓହ୍ଲାଇ ଯେଉଁମାନେ ବ୍ୟଗ୍ରତା ସମ୍ଭାଳି ନପାରି ଘରମୁହାଁ ହୁଅନ୍ତି ସେମାନେ ଏଇଠି ଚୋର, ଖଣ୍ଟଙ୍କ ହାବୁଡ଼େ ପଡ଼ନ୍ତି । ଉପେନ୍ଦ୍ର ଭାଇ ଟ୍ରେନ୍‌ରୁ ଓହ୍ଲାଇ କିପରି ମାଉସୀମା ମନ୍ଦିର ପାରିହେବେ ଭାବୁଛନ୍ତି ଭୁବନେଶ୍ୱର ମନ୍ଦିର ପର୍ଯ୍ୟନ୍ତ ଜଣେ ସହଯାତ୍ରୀ ପାଇଲେ । ମନରେ ଆଣ୍ଟ ବାନ୍ଧି ବାହାରିଲେ । ମନ୍ଦିରଠାରୁ ଆମ ଗାଁ ଆଠ ମାଇଲ । ଜ୍ୟୈଷ୍ଠ ମାସିଆ ଆକାଶରେ ଜହ୍ନ ମେଘ ସହିତ ଲୁଚକାଳି ଖେଳୁଛି । ଛାଇ ଆଲୁଅରେ ଝୁଣ୍ଟି ପଡ଼ି ଧାଇଁଛନ୍ତି । କୁମ୍ଭିର ଦାନ୍ତ ଭଳି ରାସ୍ତା ସାରା ନାଲି ଗେଟି । ତାକୁ ଅତିକ୍ରମ କରି ଆସି କୌଶଲ୍ୟାଗଂଗ ନିକଟରେ ପହଞ୍ଚିଲା ବେଳକୁ ଯୂଇଟିଏ ଜୁକ୍ ଜୁକ୍ ହୋଇ ଜଳୁଛି । ଆକାଶକୁ ମେଘ ଘୋଡ଼ାଇ ପକାଇଲାଣି । ମେଘ ଦେଖି ଦରପୋଡ଼ା ମୁର୍ଦ୍ଦାରକୁ ଛାଡ଼ିଦେଇ ମଡ଼ାସାଙ୍ଗିଆମାନେ ଚାଲିଗଲେଣି । ଏତିକିବେଳେ 'ଢୁ' କରି ଗୋଟାଏ ଶବ୍ଦ ହେଲା । ଯୂଇ ଦେହରୁ ବୁଢ଼ୀ ଅସୁରୁଣୀ ପାଟିରୁ ନିଆଁ ଝୁଲ ଝରିଲା ଭଳି, ନିଆଁ ବିଛାଡ଼ି ହୋଇ ପଡ଼ିଲା ଚାରିଆଡ଼େ । ମୁର୍ଦ୍ଦାରର ମୁଣ୍ଡଟି ଫାଟିଗଲା ପରା । ଉପେନ୍ଦ୍ର ଭାଇଙ୍କ ଦେହରୁ ଗମ୍ ଗମ୍ ହୋଇ ଝାଳ ବାହାରି ଗଲା ।

ବୁଦ୍ଧଦେବ ମୃତ୍ୟୁ ଶଯ୍ୟାରେ। ଚକ୍ଷୁ ଅର୍ଦ୍ଧ ନିମୀଳିତ। ମୁହଁରେ ଗମ୍ଭିର ମୁଦ୍ରା। ପାଖରେ ଶିଷ୍ୟ ଶିରୋମଣି ଆନନ୍ଦ। ଆନନ୍ଦ ପଚାରିଲେ 'ପ୍ରଭୁ, ଆପଣଙ୍କ ମୃତ୍ୟୁ ପରେ ଆମେ ଦିଗହ୍ରଜା ହୋଇଯିବୁ। କ'ଣ କରିବୁ କୁହନ୍ତୁ।' ବୁଦ୍ଧ ଉତ୍ତର ଦେଲେ- 'ଆନନ୍ଦ, ମନେକର ତୁମେ ରାତ୍ରିର ଅନ୍ଧକାର ମଧ୍ୟରେ ଗୋଟିଏ ଦୀପ ନେଇ ଅରଣ୍ୟ ମଧ୍ୟରେ ଯାଉଛ। ହଠାତ୍ ଦୀପଟି ଲିଭିଗଲା। ତୁମେ କ'ଣ ରାତ୍ରି ପାହିବା ପର୍ଯ୍ୟନ୍ତ ସେଠାରେ ଅପେକ୍ଷା କରିବ ?' ଆନନ୍ଦ ଉତ୍ତର ଦେଲେ- 'ନା ପ୍ରଭୁ।' ବୁଦ୍ଧ ପୁଣି ପ୍ରଶ୍ନ କଲେ- 'ତୁମେ କ'ଣ ପଛକୁ ଫେରି ଆସିବ ?' ଆନନ୍ଦ ଉତ୍ତର ଦେଲେ- 'ନା'। ବୁଦ୍ଧ ଶେଷ ପ୍ରଶ୍ନ କଲେ, 'ତେବେ ତୁମେ କ'ଣ କରିବ ?' ବୁଦ୍ଧଙ୍କର ଗମ୍ଭୀର ମୁଖମଣ୍ଡଳରେ ହସର ଗୋଟିଏ କ୍ଷୀଣ ରେଖା ଦେଖାଦେଲା। ଆନନ୍ଦ ଉତ୍ତର ଦେଲେ- 'ମୁଁ ଗନ୍ତବ୍ୟ ପଥରେ ଅଗ୍ରସର ହେବି।'

ଆନନ୍ଦଙ୍କର ଆଉ କିଛି ପଚାରିବାର ନଥିଲା। ଉପେନ୍ଦ୍ର ଭାଇଙ୍କର ଆଗକୁ ଯିବା ଭିନ୍ନ ଅନ୍ୟ ଉପାୟ ନଥିଲା। ମହା ମୃତ୍ୟୁଞ୍ଜୟ ସ୍ତୋତ୍ର ପାଠ କରି କରି ଗାଁରେ ଆସି ପହଞ୍ଚିଲା ବେଳକୁ ଷ୍ଟେଜ୍ ରିହର୍ସଲ ଆରମ୍ଭ ହେଉଛି। ବିଶି ଭାଇଙ୍କ ଆଖି ପଡ଼ିଲା ତାଙ୍କ ଉପରେ। ଦେହସାରା ଝାଳରେ ଜୁଡୁବୁଡୁ। ମୁହଁ ଶୁଖି କଳାକାଠ। ଚେତନା ହରାଇବା ଉପରେ। କିଏ ଜଣେ ଦୌଡ଼ି ଯାଇ ପାଣି ଡାଳଟାଏ ନେଇ ଆସିଲା। ମୁହଁରେ ପାଣି ମାରି ସାଷ୍ଟମ କରିବାକୁ ଅଧଘଣ୍ଟାଏ ଲାଗିଲା। ସମସ୍ତେ କହିଲେ- 'ଯା ଘରେ ଶୋଇବୁ।' ବିନା ରିହର୍ସଲରେ ସେ ଦିନ କିନ୍ତୁ ନିଖୁଣ ଅଭିନୟ କରିଥିଲେ ଉପେନ୍ଦ୍ର ଭାଇ।

କବି ଅନନ୍ତ ପ୍ରସାଦ ପଣ୍ଡାଙ୍କର ତାରାବାଈ (୧୯୩୬) ଏକ ଭିନ୍ନସ୍ୱାଦର ନାଟକ। ରାଜସ୍ଥାନ ପୃଷ୍ଠଭୂମି ଉପରେ ରଚିତ୍ ଏହି ଐତିହାସିକ ନାଟକଟି ରାଜସ୍ଥାନୀ ପରମ୍ପରାର ଏକ କମନୀୟ ଆଲେଖ୍ୟ।

ତାରାବାଈଙ୍କୁ ବିବାହ କରିବାକୁ ମେବାରର ରାଣା ଜୟମଲ୍ଲ ଇଚ୍ଛୁକ। କିନ୍ତୁ ତାରାବାଈ ପିତାଙ୍କର ସର୍ତ୍ତ-ଜୟମଲ୍ଲ ତାଙ୍କର ହୃତ ରାଜ୍ୟ ଉଦ୍ଧାର କଲେ ହିଁ ସେ ତାରାବାଈଙ୍କ ପାଣି ଗ୍ରହଣ କରିବାକୁ ଯୋଗ୍ୟ ବିବେଚିତ ହେବେ। ଭାଗ୍ୟର ବିଡ଼ମ୍ବନା। ଜୟମଲ୍ଲ ପରାଜିତ ହୋଇଛନ୍ତି- ତାରାବାଈ ପିତାଙ୍କର ହୃତ ରାଜ୍ୟ ଫେରାଇ ଆଣିବାରେ ବ୍ୟର୍ଥ ହୋଇଛନ୍ତି। କିନ୍ତୁ ତାରାବାଈଙ୍କ ପାଣିଗ୍ରହଣ କରିବାର ଅଦମ୍ୟ ଇଚ୍ଛା ଦମନ କରି ପାରି ନାହାନ୍ତି। ବଳ ପ୍ରୟୋଗ କରି ତାରାବାଈଙ୍କୁ ଅପହରଣ କରିବାକୁ ଉଦ୍ୟମ କରି ପୁଣି ବିଫଳ ହୋଇଛନ୍ତି। ଫଳରେ ତାରାବାଈଙ୍କ ପିତାଙ୍କ ଦ୍ୱାରା ବନ୍ଦୀ ହୋଇ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହୋଇଛନ୍ତି। ଘଟଣା ଚକ୍ରରେ ଜୟମଲ୍ଲଙ୍କ ସାନ ଭାଇ ପୃଥ୍ୱୀରାଜଙ୍କ ସହିତ ତାରାବାଈଙ୍କର ସାକ୍ଷାତ ହୁଏ ଗୋଟିଏ ଅରଣ୍ୟରେ।

ଉଭୟେ ଉଭୟଙ୍କୁ ଭଲ ପାଇ ବସନ୍ତି। କିନ୍ତୁ ପୂର୍ବ ସର୍ଗର ପୁନରାବୃତ୍ତି କରନ୍ତି ତାରାବାଈଙ୍କ ପିତା। ପୃଥ୍ୱୀରାଜ ଅପହୃତ ରାଜ୍ୟ ଫେରାଇ ଆଣିବା ପରେ ତାରା ବାଈଙ୍କୁ ବିବାହ କରନ୍ତି କିନ୍ତୁ ନାଟକ ଏଠାରେ ଶେଷ ହୁଏ ନାହିଁ। ଗୋଟିଏ ଦୁର୍ଘଟଣାର ସମ୍ବାଦ ପାଇ ପୃଥ୍ୱୀରାଜ ଭଗ୍ନୀ ପତି ଘରକୁ ଯାଆନ୍ତି। ସେଠାରେ ଭଗ୍ନୀପତି ତାଙ୍କୁ ବିଷଦେଇ ହତ୍ୟା କରେ। ତାରାବାଈ ସତୀ ଚିତାରେ ଝାସ ଦିଅନ୍ତି- ନାଟକ ଶେଷ ହୁଏ।

୧୯୪୮ ମସିହା ହେବ ବୋଧହୁଏ। ଆମ ଗାଁରେ 'ଅଭିଯାନ' ନାଟକ ମଂଚସ୍ଥ ହେଲା। ସେତେବେଳକୁ ରାମଶଙ୍କର ରାୟଙ୍କର କାଞ୍ଚିକାବେରୀ ବିଶେଷ ସୁନାମ ଅର୍ଜନ କରିଥାଏ। ଭିକାରି ଚରଣ ପଟ୍ଟନାୟକଙ୍କ ରାଜା ପୁରୁଷୋତ୍ତମ ଦେବ ଏବଂ ଗୋଦାବରୀଶ ମିଶ୍ରଙ୍କର 'ପୁରୁଷୋତ୍ତମ ଦେବ' ନାଟକ ପ୍ରକାଶିତ ହୋଇଥାଏ। କାଳୀଚରଣ ପଟ୍ଟନାୟକ ଏ ନାଟକଟି ପ୍ରଥମେ ମଂଚସ୍ଥ କରିଥିଲେ ୧୬.୬.୪୬ ତାରିଖରେ। ନାଟକରେ ସେ ଲେଖିଛନ୍ତି-

ପାଞ୍ଚଶ ବରଷ କଥା
ଏଇ କଙ୍କାଳର ଥିଲା ସେତେବେଳେ
ରକତ ମାଉଁସ ମଥା
ପାଶୋରା କଥାକୁ ଦେବାକୁ ଚେତାଇ
ରକତେ ସେ ତେଜ ଦେବାକୁ ମତାଇ
ଭାଇ ଆଗେ ଆଜି ବାଡ଼ି ମୁଁ ବସିଲି
ଏଇ ଅଭିଯାନ ଗାଥା।

ସତକୁ ସତ ଓଡ଼ିଆ ରାଜାର ବୀରତ୍ୱ କାହାଣୀ, ଜଗନ୍ନାଥଙ୍କ ମହିମା ସମ୍ବଳିତ ଏଇ ନାଟକ ଯେତେବେଳେ ଆମ ଗାଁରେ ମଞ୍ଚସ୍ଥ ହେଲା ସେତେବେଳେ ଦର୍ଶକଙ୍କ ମନରେ ଶିହରଣ ଖେଳି ଯାଇଥିଲା। ଗୋଟିଏ ଦୃଶ୍ୟ ଏବେ ମଧ୍ୟ ମୋର ମନେ ଅଛି। ଦୀର୍ଘକାୟ ସୁଦର୍ଶନ ଯୁବକ କୟିଭାଇ ପୁରୁଷୋତ୍ତମ ଦେବ ଭୂମିକାରେ ଅବତୀର୍ଣ୍ଣ ହୋଇଥାନ୍ତି। ଉଦୟନାଥ ଦାଦି କଳାପଟା ଉପରେ କାଗଜ ମଡାଇ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ଚିତ୍ର ଅଙ୍କନ କରିଥାନ୍ତି। ସତେକି ଜଗନ୍ନାଥ ମନ୍ଦିରର ତିନିଗୋଟି ମୂର୍ତ୍ତିକୁ କିଏ ଉଠାଇ ଆଣିଛି।

ସିନ୍ ଉଠିଲା।

ପୁରୁଷବେଶୀ ମାୟ୍ ଜଗନ୍ନାଥଙ୍କୁ ଫୁଲମାଳ ଲାଗି କରି ଅନ୍ତରାଳକୁ ଅପସରି ଯାଇଛି। କାହିଁ କେତେଦୂର କାଞ୍ଚିରୁ ପଦ୍ମାବତୀଙ୍କର ହାତ ଗୁନ୍ଥା ଫୁଲମାଳଟି ଆଣିଛି ପ୍ରିୟସଖୀ ମାୟ୍- ପୂଜାରିଣୀର ନୈବେଦ୍ୟ ନେଇ।

ପୁରୁଷୋତ୍ତମ ଦେବ ଆସିବେ। କାଞ୍ଚି ଅଭିଯାନ ପାଇଁ ଆଜ୍ଞାମାଳ ନେବେ। ବୀର କାହାଳୀ ବାଜିଲା। ବାଇଶି ପାହାଚ ଉପରେ ଗଜପତି ବିଜେ ହେଲେଣି। ମଣିମା, ମଣିମା ଡାକ ଶୁଭୁଛି।

ଭ୍ରମର ଭାଇ ପଢ଼ିଲେ-

ବୀରଶ୍ରୀ ଗଜପତି ଗଉଡ଼େଶ୍ୱର, ନବକୋଟୀ କର୍ଣ୍ଣାଟ କଳବର୍ଗେଶ୍ୱର, ଅଭିରାଏ, ଭୂତ ଭୈରବ ଦୁଃସହ ଦୁଃଶାସନ ଅନିକରଣେ ରାଉତରାୟ ଅତୁଳବଳ ପରାକ୍ରମେ, ସଂଗ୍ରାମେ ସହସ୍ର ବାହୁ ଧୂମକେତୁ ଶ୍ରୀ ଶ୍ରୀ ପୁରୁଷୋତ୍ତମ ଦେବ ବିଜେ ଛାମୁ ଛାଡ଼, ଛାମୁ ଛାଡ଼, ଛାମୁ ଛାଡ଼।

ପୁରୁଷୋତ୍ତମ ଦେବ ଛତ୍ର ଚାମର ସହିତ ପ୍ରବେଶ କଲେ। ଯୋଡ଼ି ମହୁରୀ, ତେଲିଙ୍ଗି ବାଜା ବାଜୁଛି। ହାତରେ ରତ୍ନଦୀପ ଧରି ପୁରୁଷୋତ୍ତମ ଦେବ ଆଳତି କରୁଛନ୍ତି। ବଡ଼ପଣ୍ଡା ସ୍ତୋତ୍ର ପାଠ କରୁଛନ୍ତି-

ମହାମ୍ଭୋଧେସ୍ତିରେ କନକ ରୁଚିରେ
ନୀଳ ଶିଖରେ
ବସନ ପ୍ରାସାଦାନ୍ତେ ସହଜ
ବଳଭଦ୍ରେଣ ବଳିନା
ସୁଭଦ୍ରା ମଧ୍ୟସ୍ଥ ସକଳ ସୁର
ସେବା ବସରୋଦ
ଜଗନ୍ନାଥ ସ୍ୱାମୀ, ନୟନ ପଥଗାମୀ
ଭବ ତୁମେ।

ପଦ୍ମାବତୀଙ୍କ ହାତ ଗୁନ୍ଥା ମାଳଟି ପୁରୁଷୋତ୍ତମ ଦେବଙ୍କ ଉଦ୍ଦେଶ୍ୟରେ ଜଗନ୍ନାଥଙ୍କ କଣ୍ଠରୁ ଖସି ପଡୁଛି।

ଦର୍ଶକ ମଣ୍ଡଳୀ ମୁହୂର୍ତ୍ତକ ପାଇଁ ସ୍ତବ୍ଧ ହୋଇଗଲେ। ସମୟ ଯେପରି ସ୍ଥିର ହୋଇଗଲା। ତା ପରେ ଦର୍ଶକ ମଣ୍ଡଳୀରୁ ସମବେତ କଣ୍ଠରେ ଶୁଭିଲା ହରିବୋଲ ହୁଳହୁଳି ଧ୍ୱନି। ସମଗ୍ର ପରିବେଶ ଭକ୍ତି ସ୍ନାତ ହୋଇଗଲା। ଦର୍ଶକମାନେ ଆତ୍ମ ବିସ୍ମୃତ ହୋଇଗଲେ।

ସେ ଏକ ଚଟୁଳ ସଂଧ୍ୟା। କାବେରୀର ଆସ୍ତୀର୍ଣ୍ଣ ବାଲି ଶଯ୍ୟା ଉପରେ ରତିକ୍ଳାନ୍ତା ରମଣୀଟିଏ ଭଳି ଶୋଇ ଯାଇଛି କାବେରୀର ସ୍ୱଚ୍ଛ ଜଳଧାର। ପଶ୍ଚିମ ଦିଗନ୍ତର ଅସ୍ତରାଗ ଉକୁଟି ଉଠୁଛି ଶୀର୍ଣ୍ଣ ଦେହା କାବେରୀ ଉପରେ ପାଟଳ ନାଲି ରଂଗର ଅବିନ୍ୟସ୍ତ ଶାଢ଼ୀଟିଏ ଭଳି। ନଈ ଆରପାରିରେ ପଦ୍ମାବତୀ ଦେଖୁଛନ୍ତି ଜଣେ ସୁଠାମ ସୁନ୍ଦର ଯୁବକ। ଗୌର ତନୁରେ ସୁବର୍ଣ୍ଣ କିରଣ ବିଛାଡ଼ି ହୋଇ ପଡ଼ିଛି।

ସେ ଉତ୍କଳର ଗଜପତି ପୁରୁଷୋତ୍ତମ ଦେବ। ପଦ୍ମାବତୀ ସେଇ ଆସନ୍ନ ସଂଧ୍ୟାରେ ନିଜକୁ ନିବେଦନ କରି ଦେଇଛନ୍ତି ସେଇ ଯୁବକର ଚରଣ ତଳେ।

ସେଇ ଦିନ- ସେଇ ସଂଧ୍ୟା।

'କାଞ୍ଚିର ରାଜୋଦ୍ୟାନରେ ଦେଖା ଦେଲା ପଦ୍ମାବତୀଙ୍କର ଦୁଇଟି ଚପଳ ସୁନ୍ଦର ଭ୍ରମର କୃଷ୍ଣ ନୟନ। ସ୍ୱପ୍ନର ଛାୟା ପରି ସେ ଦୃଶ୍ୟ ପୁରୁଷୋତ୍ତମ ଦେବଙ୍କର ମନ ପ୍ରାଣ ବନ୍ଦୀ କଲା।'

'ପାଇ ହ୍ଜାଇବାର' ଅବ୍ୟକ୍ତ ବ୍ୟାକୁଳତା ନେଇ କାଂଚି ସୀମାରୁ ଫେରି ଆସିଥିଲେ ପୁରୁଷୋତ୍ତମ ଦେବ।

ସେଇଦିନୁ ସେଇ ସ୍ମୃତିର ଉଦ୍‌ବୋଧନରେ ପଦ୍ମାବତୀଙ୍କର ହୃଦୟ ତନ୍ତ୍ରୀ ମର୍ମରି ଉଠିଛି।

'ମଉଳା ଖରାରେ ଆସିଲ ଦେବତା
ଆଖିରେ କହିଲ କେତେ ମନ କଥା
ସଂଜ ତପନ ମୁହଁସାରା ମୋର
ବୋଳି ଦେଇଗଲା ନାଲି
ସତେ ମୁଁ ଲାଜରେ ମଲି
ପହିଲେ ସେଦିନ ମୋ ମନ ଦୁଆରେ ବସନ୍ତ ଡାକ ଶୁଣିଲି।'

ଗଜପତିଙ୍କ ନିଷ୍କପ ପ୍ରେମ ଚାହିଁଥିଲା କାଞ୍ଚି ରାଜାଙ୍କର ସ୍ୱୀକୃତି। କିନ୍ତୁ ବିନିମୟରେ ମିଳିଥିଲା ଲାଞ୍ଛନା-ଉତ୍କଳର ଗଜପତି, ଉତ୍କଳର ପ୍ରଭୁ ଜଗନ୍ନାଥଙ୍କ ପ୍ରତି ଶାଣିତ ବିଦ୍ରୂପ।

ଅଜ୍ଞତା ସହିତ ପ୍ରଜ୍ଞାର, ଅହମିକା ସହିତ ଋଜୁତାର ସଂଘର୍ଷ ଚିରାଗତ- ଅନିବାର୍ଯ୍ୟ।

କାଞ୍ଚିର ଗଡ଼ଦ୍ୱାରରେ ଉତ୍କଳ ସେନାର ରଣ ହୁଙ୍କାର ଶୁଭିଛି। ପୁଣି 'କାଞ୍ଚି ରାଜଜେମା ପଦ୍ମାବତୀଙ୍କ ଚରଣ ତଳକୁ ଉତ୍କଳର କୋଟିଏ ସନ୍ତାନର ବନ୍ଦନା ନିବେଦନ ଘେନି' କାଞ୍ଚି ସିଂହାସନ ତଳେ ଉତ୍କଳ ଦୂତ ଅପେକ୍ଷା କରିଛି।

ପରୀକ୍ଷାର ସମୟ ଉପନୀତ। ଶକ୍ତିର ପରୀକ୍ଷା ନୁହେଁ-ପ୍ରେମ ପ୍ରତି ନିଷ୍ଠାର ପରୀକ୍ଷା।

ଚକାଡ଼ୋଳା ଯୁଗେ ଯୁଗେ ଭକ୍ତର ପରୀକ୍ଷା ନିଅନ୍ତି ପରା !

ଉତ୍କଳୀୟ ସେନା ଶତ୍ରୁ ହାତରେ ପରାଜୟ ବରଣ କରିଛନ୍ତି। ଦୂତର ନିବେଦନ ଉପେକ୍ଷିତ ହୋଇଛି କାଞ୍ଚି ଦରବାରରେ।

ପାଞ୍ଚାଳୀର ବିଶ୍ୱାସ ନେଇ ଅପେକ୍ଷା କରିଛନ୍ତି ପଦ୍ମାବତୀ। ପୁରୁଷୋତ୍ତମ ଆସିବେ-ଯୁଦ୍ଧରେ ବିଜୟ୍ ଲାଭ କରିବେ। ଜଗନ୍ନାଥଙ୍କ କୃପା ଭିକ୍ଷା କରି ମାଳାଟିଏ ଗୁନ୍ଥି ପଠାଇଛନ୍ତି 'ମାୟ୍' ହାତରେ ସୁଦୂର କାଞ୍ଚିରୁ। ସେଇ ମାଳାଟିକୁ ଜଗନ୍ନାଥଙ୍କ କଣ୍ଠରେ ମାୟ୍ ଲାଗି କରିଛି। ଜଗନ୍ନାଥଙ୍କ କରୁଣା ଝରି ପଡ଼ିଛି। ମାୟ୍, ଲାଗି କରିଥିବା ମାଳାଟି ଖସି ପଡ଼ିଛି ଜଗନ୍ନାଥଙ୍କ କଣ୍ଠରୁ। ହରିବୋଲ ଧ୍ୱନି ମଧ୍ୟରେ ପୂଜାପଣ୍ଡା ଜଗନ୍ନାଥଙ୍କ ଆଜ୍ଞାମାଳ ରୂପେ ଗଜପତିଙ୍କ ଗଳାରେ ଲମ୍ବାଇ ଦେଇଛି ସେହି ମାଳାଟିକୁ। ପୂଜାରିଣୀର ନୈବେଦ୍ୟ ବ୍ୟର୍ଥ ଯାଇ ନାହିଁ।

କେଉଁ ଗୁଡ଼ିଆଠୁ ମନୋହର ରାଶି ଲଡୁ ଖାଇ, ମାଣିକ ହାତରୁ ଦହି ଟିକିଏ ପିଇ କଳା ଧଳା ଘୋଡ଼ା ଚଢ଼ି ଜଗନ୍ନାଥ ବଳଭଦ୍ର ଯାଇଛନ୍ତି ଯୁଦ୍ଧ ଭୂମିକୁ- ଉତ୍କଳର ସମ୍ମାନ ରଖିବାକୁ।

ଯୁଦ୍ଧରେ ବିଜୟ୍ ଲାଭ କରି ପୁରୁଷୋତ୍ତମ ଫେରି ଆସିଛନ୍ତି ପୁରୀ। ସାଥିରେ ପଦ୍ମାବତୀ। ବଡ଼ ଦାଣ୍ଡରେ ଚାପା ଗୁଞ୍ଜରଣ ଶୁଭିଛି- 'ସେଇ ମାଇକିନିଆଙ୍କ ପାଇଁ ନ ହଉଚି କଣ ? ନ ହେଲା କଣ ? ବେହିପୋ କାଞ୍ଚି ଯୁଦ୍ଧ ତ ତା'ର ଛଳନା। ତୁମେ ଜାଣି ନା ?'

ବିଜୟ୍ର ଆନନ୍ଦ ଉଲ୍ଲାସ କ୍ଷତାକ୍ତ ହୋଇଛି।

'ସିଂହାସନ ରାଜାର-ପ୍ରେମିକର ନୁହେଁ। ପ୍ରଜା ସନ୍ତୋଷ ହୁଅନ୍ତୁ-ସିଂହାସନର ମହତ୍ତ୍ୱ ରହୁ- ରାଜ ଧର୍ମର ରକ୍ଷା ହେଉ'-ଏହାହିଁ ହୋଇଛି ପୁରୁଷୋତ୍ତମ ଦେବଙ୍କର ଚୂଡ଼ାନ୍ତ ନିଷ୍ପତ୍ତି। ପଦ୍ମାବତୀ ଚଣ୍ଡାଳ କରରେ ସମର୍ପିତା ହେବେ- ଏ ହେଉଛି ଚୂଡ଼ାନ୍ତ ଆଦେଶ।

ସେଦିନ ରଥାରୁଢ଼ ଜଗନ୍ନାଥଙ୍କ ସମ୍ମୁଖରେ ଚଣ୍ଡାଳକାର୍ଯ୍ୟରତ ପୁରୁଷୋତ୍ତମ ଦେବଙ୍କ ହସ୍ତରେ ପଦ୍ମାବତୀଙ୍କୁ ସମର୍ପଣ କରି ରାଜାଦେଶ ପାଳନ କରିଛନ୍ତି ମହାମନ୍ତ୍ରୀ। ଜନତା ଦରବାରରେ ଏ ବିବାହ ସ୍ୱୀକୃତି ଲାଭ କରିଛି।

ଓଡ଼ିଶା ଇତିହାସର ଗୋଟିଏ ଛୋଟିଆ ଅଥଚ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ୍ କବି କଳ୍ପନାର ଯାଦୁକରି ସ୍ପର୍ଶରେ ମୂର୍ତ୍ତ ହୋଇଛି।

ପ୍ରଥମେ ରାସ, ରାସ ପରେ ପୌରାଣିକ, ଏବଂ ପୌରାଣିକ ପରେ ଐତିହାସିକ ନାଟକ ଆମଗାଁରେ ମଞ୍ଚସ୍ଥ ହେବା ଗୋଟିଏ ଉଲ୍ଲେଖନୀୟ୍ ଘଟଣା। ସମୟ୍କ୍ରମେ ଦର୍ଶକଙ୍କ ରୁଚିବୋଧର ଯେଉଁ ପରିବର୍ତ୍ତନ ଘଟୁଥିଲା ଏହା ଯେପରି ତାର ଏକ ପ୍ରତିଫଳନ।

ପୁଣି ସେହି ପରିବର୍ତ୍ତନର ସ୍ୱାକ୍ଷର ବହନ କରି ମଞ୍ଚସ୍ଥ ହେଲା ମୂଲିଆ। ଆମ ଗାଁ ମଂଚରେ ପ୍ରଥମ ସାମାଜିକ ନାଟକ, ୧୯୪୯ ମସିହାରେ।

ପାରିବାରିକ ଦ୍ୱନ୍ଦକୁ ନେଇ ଯେଉଁ ସବୁ ନାଟକ ଉପନ୍ୟାସ ସୃଷ୍ଟି ହୋଇଛି ସେଥିରେ ମୁଖ୍ୟତଃ ଭାଇ ଭାଇ ମଧ୍ୟରେ ଦ୍ୱନ୍ଦ ସ୍ଥାନିତ ହୋଇଛି। କୃଷି ଭିତ୍ତିକ ଅର୍ଥନୀତିରେ ଯୌଥ ପରିବାର ଅପରିହାର୍ଯ୍ୟ। ଯୁଗ ଯୁଗ ଧରି ଯୌଥ ପରିବାରର କୃଷ୍ଟି ଉପରେ ଭାରତୀୟ ପରିବାର ଗଢ଼ି ଉଠିଛି। ନୂତନ ସଭ୍ୟତାର ବିକାଶ, ଶିକ୍ଷା ଓ ଶିଳ୍ପର ପ୍ରସାର ଯୌଥ ପରିବାର ଉପରେ କଳାମେଘ ଢାଙ୍କି ଦେଇଛି। ଯୌଥ ପରିବାର ଧୀରେ ଧୀରେ ପ୍ରାସଙ୍ଗିକତା ହରାଇ ବସିଛି। ସେତେବେଳେ ଏ ସମସ୍ୟାଟି ଏକ ଜ୍ୱଳନ୍ତ ସମସ୍ୟା ରୂପେ ଦେଖାଦେଇଛି। ଏହିପରି ଗୋଟିଏ ପରିବାର ନନ୍ଦର। ହସ ଖୁସିର ପରିବାର-ସଂଗତି ସଂପନ୍ନ ପରିବାର। ସାନଭାଇ ରାଜୁକୁ ପଠାଇଛି ସହରକୁ ଉଚ୍ଚଶିକ୍ଷା ପାଇଁ। ସହରି ସଂସ୍କୃତି ତା ଆଖିରେ ଯେଉଁ ଇନ୍ଦ୍ରଜାଲ ସୃଷ୍ଟି କରିଛି ସେଥିରେ ଭୁଲିଛି ବଡ଼ଭାଇ ନନ୍ଦକୁ ଏବଂ ସରଳା କିଶୋରୀ ସରକୁ। ନିତି ଜାଗର ଜାଳି ରାଜୁର ଲେଉଟାଣି ବାଟକୁ ଚାହିଁ ବସିଛି ବିଚାରୀ। କେତେବେଳେ ମେଘକୁ ଚାହିଁ-କେତେବେଳେ ଜହ୍ନକୁ ଚାହିଁ ଆଖିରୁ ଲୁହ ଝରାଉଛି।

ଚଲା ବାଦଲରେ ଘେନି ଯା
ତୋ ସାଥେ ମୋ ବେଦନା ବିନ୍ଦୁଧାରା
ପରଦେଶେ ରହିଲେ ସେ ନିଠୁର ଚିତ୍ତ ଚୋରା।

ରାଜୁ କିନ୍ତୁ ଘୁରି ବୁଲୁଛି ଅତ୍ୟାଧୁନିକା କଳ୍ପନା ଚାରିପଟେ। ଓକିଲ କୁଞ୍ଜବିହାରୀଙ୍କ ଏକମାତ୍ର ଅଲ୍ୟଳୀ କନ୍ୟା ସେ। ପିଲାଦିନେ ଜାପାନୀ କଣ୍ଢେଇରେ ଖେଳୁଥିଲା, ଏବେ ଯୁବକମାନଙ୍କ ସହିତ ଖେଳୁଛି। ତାକୁ କେନ୍ଦ୍ର କରି ରାଜୁ ଗଢ଼ିଛି କଳ୍ପନାର ତାଜମହଲ। କଲେଜ ପଢୁଆ ଭାଇର କ୍ରମବର୍ଦ୍ଧିଷ୍ଣୁ ଆବଶ୍ୟକତା ମେଣ୍ଟାଇବା ପାଇଁ ନନ୍ଦ ଜମିବାଡ଼ି ବିକି ପରିଶେଷରେ ମୋଟ ବୁହାଇଛି। କିନ୍ତୁ ଗାଁ ଟାଉଟର ଧଡ଼ି ମହାପାତ୍ର ଦୁଇ ଭାଇଙ୍କ ମଝିରେ ସୃଷ୍ଟି କରିଛି ମେଘନାଦ ପାଚେରୀ। ପୁଣି ପରିଣତ ବୟସରେ ସରର ହାତ ଧରିବାକୁ ଆଗେଇ ଆସିଛି। ସରର ବିବଶ ବାପା ଅସମ୍ମତ ହୋଇ ପାରିନାହିଁ। ବିବାହ ମଣ୍ଡପ ଉପରେ ଧଡ଼ି ମହାପାତ୍ର ଓ ସର। ନାଟକୀୟ ଉତ୍କଣ୍ଠା ଯେତେବେଳେ ଚରମ ସୀମା ସ୍ପର୍ଶ କରିଛି ସେତିକିବେଳେ ରାଜୁ ତା'ର ଭୁଲ ବୁଝିପାରି ଫେରି ଆସିଛି ଗାଁକୁ। କଳାବଜାରୀ ଅଭିଯୋଗରେ ଧଡ଼ି ମହାପାତ୍ର ଗିରଫ ହୋଇଛି। ରାଜୁ ସେଇ ବିବାହ ମଣ୍ଡପରେ ସରକୁ ବିବାହ କରିଛି। ନାଟକ ଶେଷ ହୋଇଛି।

ରାଜୁ ଭୂମିକାରେ ଦେବେନ୍ଦ୍ର ଭାଇ, କୁମାର ଭୂମିକାରେ ଜୟି ଭାଇ, ଧଡ଼ି ମହାପାତ୍ର ଭୂମିକାରେ ଭ୍ରମର ଭାଇ, କୁଞ୍ଜ ବିହାରୀ ଭୂମିକାରେ କାଶୀ ଭାଇ ଅଭିନୟ

କରିଥିଲେ । ସବୁଠାରୁ ଦୁଇଟି ମର୍ମସ୍ପର୍ଶୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ବିଶିଭାଇ ଓ ବିଶ୍ୱନାଥ ସାହୁ । ଏଇ ନାଟକରେ ଚିତ୍ତ ପ୍ରଥମଥର ପାଇଁ ମଂଚରେ ପ୍ରବେଶ କଲା । ସେ ବର୍ଷ ନୂଆ ହୋଇ ମକୁନ୍ଦ ଦାସ ପୁରର ଅବଲା ରଂଜନ (ଡାକ ନାମ ମହି) ନବା ଭୂମିକାରେ ଅଭିନୟ କରି ସମସ୍ତଙ୍କୁ ଚମତ୍କୃତ କରିଦେଲା । ସେଇ ବର୍ଷଠାରୁ ସେ ହେଲା ଆମ ଡ୍ରାମାଟିକ୍ କ୍ଲବର ସ୍ଥାୟୀ କଳାକାର । ପରେ ଯେତେବେଳେ ଦ୍ୱିତୀୟଥର ପାଇଁ ଆମେ ଏ ନାଟକ ମଂଚସ୍ଥ କଲୁ ପ୍ରାଣ ଭାଇ ନବା ଭୂମିକାରେ ଅଭିନୟ କଲେ ।

ନାଟକରେ ଥିଲେ ଦୁଇଟି ଚରିତ୍ର ପଞ୍ଚୁ ଆଉ ବୀରା । ଜଣେ ସମାଲୋଚକଙ୍କ ମତରେ ଏ ଦୁଇଜଣ ଥିଲେ ରବିନ୍‌ହୁଡ୍ ଜାତୀୟ ଚରିତ୍ର ଯେଉଁମାନେ ଦୁଷ୍ଟ ଦଳନର ଭାର ଆପେ ଆପେ କାନ୍ଧକୁ ଉଠାଇ ନେଇ ଥିଲେ । ଏ ଦୁଇଟି ଚରିତ୍ରରେ ସୁଦି ଭାଇ, ରଜନୀ ଭାଇଙ୍କ ଅଭିନୟ ଥିଲା ଜୀବନ୍ତ- ହୃଦୟସ୍ପର୍ଶୀ । ଏ ନାଟକରେ କଳା ପ୍ରତିଭାର ପୂର୍ଣ୍ଣ ବିକଶିତ ଦିଗଟି ଯେପରି ପ୍ରଦର୍ଶନ କରିଥିଲେ ପ୍ରତିଟି କଳାକାର । ଏହାର ସଫଳତା ଏଣିକି ସାମାଜିକ ନାଟକ ମଂଚସ୍ଥ କରିବାକୁ ପ୍ରେରଣା ସୃଷ୍ଟି କଲା ।

ଏଇ ନାଟକରେ ପ୍ରଥମ ଥର ପାଇଁ ଗୋଟିଏ ଝିଅ ପିଲା ଅଭିନୟ କଲା । ଖୁବ୍ ସାହସ ଓ ମନବଳ ନେଇ ବିଶିଭାଇ ତାଙ୍କ ବଡ଼ ଝିଅ ବସନ୍ତ କୁମାରୀକୁ ମଂଚ ଉପରକୁ ନେଇ ଆସିଥିଲେ ।

ଆମେ ପିଲାମାନେ ସେତେବେଳେ ନୂଆ ନୂଆ ଏ, ବି, ସି, ଡି ଶିଖୁଥାଉ । ମୂଲିଆର ଇଂରାଜି ଡାଇଲଗ୍ ସବୁ ନିଜ ନିଜ ମଧ୍ୟରେ ଆଦାନ ପ୍ରଦାନ କରୁ । ଜଣେ କିଏ ତା ସାଥିକୁ ଖେଳିବାକୁ ଡାକିଲା, ଖେଳିବାକୁ ତା'ର ଇଚ୍ଛା ନାହିଁ, ଡାଇଲଗ୍ ଝାଡ଼ିଲା- ନୋ, ନୋ, ଲେଟ୍ ମିଷ୍ଟର ରାୟ ରିଟର୍ଣ୍ଣ ଫ୍ରମ ଦି କଚେରି । ଅର୍ଥାତ୍ ମୁଁ ଖେଳିବାକୁ ଯିବି ନାହିଁ । ଅର୍ଥ କ'ଣ ଜଣା ଅଛି ? ଇଂରାଜିରେ ତ କଥାବାର୍ତ୍ତା ହେଲା ।

ଏହାର କେଇଟି ବର୍ଷ ପରେ ଭଗିଭାଇ ସାଗୁଆରେ ଏ ନାଟକକୁ ମଞ୍ଚସ୍ଥ କରିବାକୁ ବାହାରିଲେ । ସାଗୁଆ ତାଙ୍କ ଶ୍ୱଶୁର ଘର । ନାଟକ ତାଙ୍କର ନିଶା । ଆମ ଗାଁରେ ମୂଲିଆ ନାଟକର ସଫଳତା ତାଙ୍କୁ ଉତ୍ସାହିତ କରିଥିଲା । ସାଗୁଆରେ ସେ ନିର୍ଦ୍ଦେଶନା ଦେଲେ । ନିଜେ ଓକିଲ ଭୂମିକାରେ ଅଭିନୟ କଲେ । ସେତେବେଳକୁ ସେ ଗୋଟିଏ ମଟର ସାଇକେଲ (ଌLO) କିଣି ଥା'ନ୍ତି । ଗାଁ ଗହଳିରେ ମଟର ସାଇକଲ ସ୍ୱପ୍ନ । ଓକିଲ କଚେରିରୁ ମଟର ସାଇକେଲରେ ଘରକୁ ଫେରୁଛନ୍ତି- ଏଇ ଲକ୍ଷ୍ୟରେ ମଟର ସାଇକଲ ଚଢ଼ି ଷ୍ଟେଜ୍ ଉପରକୁ ଚାଲି ଆସିଲେ । ଷ୍ଟେଜ୍ ଭିତରେ ପଡ଼ିଛି ପକାଘର ସିନ୍ । ଘର ଭିତରେ ଚୌକି, ଟେବୁଲ ସଜା ହୋଇଛି । ଆମ ଗାଁରୁ ଅନେକ ଯାଇଥିଲେ ଏ ନାଟକ ଦେଖିବାକୁ । ବହୁଦିନ ଧରି ଏଇ କଥାକୁ ନେଇ ବିଦ୍ରୂପ କରନ୍ତି-

କହନ୍ତି, ମଟର ସାଇକେଲ କିପରି ଘର ଭିତରକୁ ପଶିଲା ? ଅବଶ୍ୟ ପଛରେ। ଆଗରେ ତାଙ୍କୁ କିଏ ଥଟା କରିବ ? ତାଙ୍କର ତ ନାକ ଦଣ୍ଡାରେ ରାଗ।

୧୯୪୪ ମସିହାରେ କାଳୀଚରଣ ପଟ୍ଟନାୟକ 'ଭାତ' ରଚନା କଲେ। ବହୁ ଦୃଷ୍ଟିରୁ ନାଟକଟି ଥିଲା ଏକ ଅନବଦ୍ୟ ସୃଷ୍ଟି। ଏହାର ସାଂଗୀତିକ ବିଭବ ଦର୍ଶକଙ୍କର ମନ ପ୍ରାଣକୁ ଆର୍ଦ୍ର କରିଥିଲା। 'ଭାତ' ଆମ ମଂଚରେ ଅଭିନୀତ ହୋଇ ନଥିଲା କିନ୍ତୁ 'ଭାତ ଲାଗି କାନ୍ଦନାରେ ଥାଉ ଗୋଡ଼ ହାତ' ଏବଂ 'ରବି ଛୁଇଁଲା ଆସି କାଛି ତଳିକି' ଗୀତ ଦୁଇଟି ବହୁ ବର୍ଷ ପର୍ଯ୍ୟନ୍ତ ଆମ ମଂଚରେ ପରିବେଷିତ ହୋଇଥିଲା।

ଆମେ ପିଲାମାନେ ଯେତେବେଳେ ଅନ୍ତାକ୍ଷରୀ ଖେଳୁ ସେତେବେଳେ ଏଇ ଗୀତକୁ ନେଇ ଖୁବ୍ କନ୍ଦଳ ହୁଏ। କିଏ ଯଦି 'ଭ'ରୁ ଆରମ୍ଭ କରି 'ଭଲା ରବି ଛୁଇଁଲା ଆସି କାଛି ତଳିକି' ଗାଇଲାଣି, କିଏ 'ର'ରୁ ଆରମ୍ଭ କରି ଗାଇଲାଣି- 'ରବି ଛୁଇଁଲା ଆସି କାଛି ତଳିକି'।

ମୁଁ ପିପିଲି ମାଇନର ସ୍କୁଲର ୬ଷ୍ଠ ଶ୍ରେଣୀରେ ପଢୁଥିବାବେଳେ ଗଣେଶ ପୂଜା ବେଳକୁ ବାକିରାଉତ ନାଟକ ମଞ୍ଚସ୍ଥ କରିବାକୁ ଶିକ୍ଷକମାନେ ସ୍ଥିର କଲେ। ବାଞ୍ଛାନିଧି ରାଉତରାୟ ଏ ନାଟକଟିକୁ ଲେଖିଥାନ୍ତି। ନିର୍ଦ୍ଦେଶନା ଦେବା ପାଇଁ ନାଟ୍ୟକାର ଆସିଲେ। ପ୍ରଥମେ ଅଭିନେତା ମନୋନୟନ। ନାଟ୍ୟକାର ପ୍ରତ୍ୟେକ ଶ୍ରେଣୀକୁ ଯାଇ ଗୋଟିଏ ଗୋଟିଏ ପଦ ଗୀତ ବୋଲିବାକୁ ପ୍ରତ୍ୟେକଙ୍କୁ କହିଲେ। ଆମର ଶ୍ରେଣୀ ଶିକ୍ଷୟିତ୍ରୀ କୁମାରୀ ପ୍ରମୋଦିନୀ ପ୍ରମାଣିକ। ମୁଁ ତାଙ୍କ ପାଖରେ ଦୁଇ ବର୍ଷ ପଢ଼ିଛି। ଏ ଜୀବନ ତାଙ୍କ ନିକଟରେ ଋଣୀ। ଜୀବନର ମୂଲ୍ୟବୋଧ ମୁଁ ତାଙ୍କଠାରୁ ଶିଖିଛି। ବହୁ ପ୍ରତିବନ୍ଧ, ବହୁ ପ୍ରଲୋଭନ ମୋତେ ପଥଚ୍ୟୁତ କରି ପାରି ନାହିଁ- କେବଳ ତାଙ୍କରି ପ୍ରଭାବ ଯୋଗୁଁ। ଶ୍ରୀ ରାଉତରାୟ ତାଙ୍କ ସହିତ ଆସି ଆମକୁ ଗୋଟିଏ ଗୋଟିଏ ପଦ ଗାଇବାକୁ କହିଲେ। ସମସ୍ତେ ବୋଲିଲେ। ମୋ ପାଳି ପଡ଼ିଲା। ଆମ ଗାଁରେ ଠିଆ ହୋଇ ଟେକାଟିଏ ପକାଇଲେ ଯାହା ଉପରେ ପଡ଼ିବ ସେ ନିଶ୍ଚୟ ଷ୍ଟେଜ୍‌ରେ ମୁହଁ ଦେଖାଇ ଥିବ, ଯଦି ଟେକାଟି ଦୈବାତ୍ ମୋ ଉପରେ ନ ପଡ଼େ। ପରବର୍ତ୍ତୀ ସମୟରେ ମୁଁ ଯେତେବେଳେ ରଂଗମଂଚ ସହିତ ସଂପୃକ୍ତ ହେଲି ସେତେବେଳେ ବାପା ମୋତେ ମୃଦୁ ଭର୍ତ୍ସନା କରି କହନ୍ତି- 'ତୋତେ ତ ଗାଇ ଆସିବ ନାହିଁ କି ନାଚି ଆସିବ ନାହିଁ, କାହିଁକି ସେଥିରେ ମାତିଛୁ।' ମୋତେ ତ ଅଭିନୟ କରି ଆସିବ ନାହିଁ। ମୁଁ କାହିଁକି ଗୀତ ବୋଲିବି ? ସେମିତି ମୁହଁ ପୋତି ଠିଆ ହୋଇ ରହିଲି। ଗୀତ ବୋଲିଲି ନାହିଁ। ଦଣ୍ଡ ପାଇଲି। ବେଞ୍ଚ ଉପରେ ଠିଆ ହେଲି। ପାଠରେ କେବେ ଦିନକ ପାଇଁ ବେଞ୍ଚ ଉପରେ ଠିଆ ହୋଇ ନାହିଁ, ଗୀତ ପାଇଁ ଏ ଗଂଜଣା ଶୁଣିଲି।

ଆଉଥରେ ପିଲା ଦିନେ ଗୀତ ପାଇଁ ବୋଲଣା ଶୁଣିଥିଲି। ୩ୟ ଶ୍ରେଣୀରେ ପଢୁଥିବାବେଳେ ଦେଶ ସ୍ୱାଧୀନ ହେବାକୁ ଯାଉଥାଏ। ଆମେ ପିଲାମାନେ ଶୋଭାଯାତ୍ରାରେ ଗାଁ ଗାଁ ବୁଲିବାକୁ ପ୍ରସ୍ତୁତ ହେଉଥାଉ। ଆମର ଶିକ୍ଷକ ଯଦୁ ଦାଦି ଗୋଟିଏ ଗୀତ ଶିଖାଇ ଥାନ୍ତି-

ଏବେ ଜଣାଗଲା ତୁମ୍ଭ କଥା
ବିଲାତି ବାଲା
ବେଳ ଆସିଲାଣି ବାନ୍ଧ
ତୁମ ପେଡ଼ି ପୁଟୁଳା।
ଘରେ ଘରେ କଳି ତକରାଳ
ଦେଲ ଲଗାଇ
ଏବେ ଭାଇ ବେକେ ଭାଇ
ଦିଏ ଛୁରୀ ଚଲାଇ।

ମୁଁ ତ ଦୁଷ୍ଟଙ୍କ ଶିରୋମଣି। ଗୀତଟିକୁ ବିଲୋମ କରି ମୁଖସ୍ଥ କଲି। ସମସ୍ତେ ଯେତେବେଳେ ବୋଲନ୍ତି ମୁଁ ବିଲୋମରେ ବୋଲେ। ଯଦୁ ଦାଦିଙ୍କ ଆଖି ପଡ଼ିଗଲା। ସେ ଭାବିଲେ ମୁଁ ଗୀତ ମୁଖସ୍ଥ କରି ନାହିଁ- ପାଟି ପାକୁ ପାକୁ କରୁଛି, ଦେଲେ ମୋ କାନ ରଗଡ଼ି।

ପିପିଲି ମାଇନର ସ୍କୁଲ କଥା କହୁଥିଲି। ପୁଣି ସେଠାକୁ ଫେରୁଛି। ଚିତ୍ତ ମୋ ସାଥିରେ ପଢ଼େ। ତାକୁ ଯେତେବେଳେ ଗୀତ ଗାଇବାକୁ କୁହାଗଲା, ଭ୍ରମର ଭାଇ ଲେଖିଥିବା ନବକିଆ ଗୀତଟିଏ, ଯାହାକୁ ସେ ଗାଁ ଥିଏଟରରୁ ଶୁଣି ମନେ ରଖିଥିଲା ଗାଇଦେଲା-

କହ ନାଗରୀ ମଣି ରସ ସାଗରୀ
ଭୃଙ୍ଗକେତକୀ ମେଳ ହୁଏ କିପରି ?

ଏହାର ଏକ ବ୍ୟଞ୍ଜନାର୍ଥ ଅଛି ବୋଲି ସେ ଅବା କାହୁଁ ଜାଣିବ ? ଆମ ବୟସର ପିଲା କେହି ବି ଜାଣି ପାରିବେ ନାହିଁ। ଯାହା ମନେପଡ଼ିଲା ଗାଇ ଦେଲା। ଅବଶ୍ୟ ସ୍କୁଲରେ ଏହାକୁ କେହି ଖରାପ ଭାବି ନାହାନ୍ତି। କିନ୍ତୁ କେଜାଣି କିମିତି ଆମ ଗାଁରେ ଏ ଖବର ଜଣା ପଡ଼ିଗଲା। କିଏ ଆଉ କହିବ ? ସେ ନିଜେ ତା ବାହାଦୁରି ବଖାଣି ଥିବ। ବିଣି ଦାଦି ଚିଡ଼ାଇବାରେ ଧୁରନ୍ଧର। ବୟସ ମାନନ୍ତି ନାହିଁ, ସ୍ଥାନ କାଳ ପାତ୍ର ମାନନ୍ତି ନାହିଁ। ଏ ଗୀତରୁ କେତେ କଥା ବାହାର କରି, ଚିତ୍ତକୁ ଅନେକ ଦିନ ଯାଏଁ ଚିଡ଼ାଇଲେ।

ସେତେବେଳକୁ ପ୍ରାଣ ଭାଇ ୭ମ ଶ୍ରେଣୀର ଛାତ୍ର । ବାଜି ରାଉତ ଭୂମିକା ପାଇଁ ତାଙ୍କୁ ମନୋନୀତ କରାଗଲା । ନାଟକର ମୁଖ୍ୟ ଭୂମିକା ବାଜି ରାଉତର-

* ମେଘ ଠାରୁ ଆହୁରି ସେ ବଡ଼
ଝଡ଼ ଠାରୁ ଆହୁରି ସେ କଳା
ସାନ ଦେହେ ଖେଳେ ତାର
ଜୀବନର ଅଲିଭା ଚପଳା ।

କମ୍ କଥା ନୁହେଁ । ନିତ୍ୟାନନ୍ଦ ମଧ୍ୟ ଆଉ ଗୋଟିଏ ଚରିତ୍ର ପାଇଁ ମନୋନୀତ ହେଲା । ଆମ ଗାଁ ମାଟିର ଆଧି ରହିଲା ।

ବାଜି ରାଉତ ଭୂମିକାରେ ସେ ଦିନର ସେଇ ଛୋଟିଆ ପିଲା ପ୍ରାଣ ଭାଇଙ୍କର ଅଭିନୟ ଆଗାମୀ ଦିନ ପାଇଁ ସମ୍ଭାବନାର ଦ୍ୱାର ଉନ୍ମୁକ୍ତ କରିଥିଲା ।

ମୁଁ ସେଇ ପିପିଲି ମାଇନର ସ୍କୁଲରେ ପଢ଼ିବାବେଳେ କୌଣସି ଗୋଟିଏ ଅନୁଷ୍ଠାନ ପାଇଁ ପିପିଲିରେ ଚାରିଟି ସୋ'ର ବିପୁଳ ଆୟୋଜନ ଆରମ୍ଭ ହେଲା । ଖୋଜି ଲୋଡ଼ି ବଛା ବଛା ଅଭିନେତାଙ୍କୁ ଯୋଗାଡ଼ କରାଗଲା । ପିପିଲିର ପ୍ରସିଦ୍ଧ ମଂଚ ଅଭିନେତା କାଶୀନାଥ ସାହୁ ନିର୍ଦ୍ଦେଶନାର ଦାୟିତ୍ୱ ନେଲେ । ନିଜେ ବି ମୁଖ୍ୟ ଭୂମିକାରେ ଅଭିନୟ କଲେ । ଗୋଟିଏ ନାଟକ ପି.ଡବ୍ଲୁ.ଡି ଅନ୍ୟଟି ମହିଷ ମର୍ଦ୍ଦିନୀ । ଏ ଦୁଇଟି ନାଟକରେ ଅଭିନୟ କରିବାକୁ ରବି ଭାଇ ମନୋନୀତ ହେଲେ । ଆମ ଗୋଡ଼ ପାଞ୍ଚ ହାତରେ ପଡ଼ିଲା ।

୧୯୫୧ ମସିହାର କଥା । ସେବର୍ଷ ଗୋଟିଏ ସାମାଜିକ ନାଟକ ସହିତ ଜୟଦେବ ଅଭିନୀତ ହେବାକୁ ଥାଏ । ସଂଜ ବୁଡୁ ବୁଡୁ ସୋବନି ଦାଦି ଗାଁ ଏ ମୁଣ୍ଡ ସେ ମୁଣ୍ଡ ବୁଲି ପାର୍ଟିଅର ମାନଙ୍କୁ ତାଗିଦ୍ କରି ଦେଇଯାଆନ୍ତି- ଠିକ୍ ଆଠଟା ବେଳେ ରିହର୍ସଲ ରୁମ୍‌ରେ ପହଞ୍ଚିବାକୁ ।

ନାଟ୍ୟକାର କାଳୀଚରଣ ପଟ୍ଟନାୟକ କୁମ୍ଭାର ଚକରେ ଲେଖିଛନ୍ତି-

'୧୯୪୩ ସାଲ । ମାସ ତାରିଖ ଠିକ୍ ମନେ ପଡୁନାହିଁ । ଥରେ କ୍ୟାପିଟାଲ ସିନେମାକୁ ବଙ୍ଗଳା ଛବି ଜୟଦେବ ଆସିଲା । ୧୯୩୬ ମସିହାରେ ମୁଁ ଗୀତଗୋବିନ୍ଦ ନାଟକ ଲେଖି ଅଭିନୀତ କରାଇ ପ୍ରଶଂସା ଅର୍ଜନ କରିଥିଲି ।

ମୁଁ ଗୋଟାଏ ଗୀତଗୋବିନ୍ଦ ଭକ୍ତ । ଗୀତଗୋବିନ୍ଦ କର୍ତ୍ତା ଜୟଦେବଙ୍କ ସମ୍ବନ୍ଧରେ ମଧ୍ୟ କେତେକ ବହି ପଢ଼ି ତଥ୍ୟ ସଂଗ୍ରହ କରୁଥାଏ । ଏତିକିବେଳେ ଜୟଦେବ ଚଳଚ୍ଚିତ୍ର କଟକକୁ ଆସିଛି ଶୁଣି ନାଚି ଉଠିଲା ମନ ମୋର । ଦେଖିବାକୁ ଗଲି ବଡ଼

* ରଚନା- ସଚ୍ଚି ରାଉତରାୟ ।

ଉତ୍କଣ୍ଠାରେ। ଛବି ଦେଖି ମନଟା ବିଷପିତା ହୋଇଗଲା। ସତେ କ'ଣ ଜୟଦେବ ବଙ୍ଗଳା କେନ୍ଦୁବିଲ୍ୱର ? ସତେ କ'ଣ ଜୟଦେବ ବଙ୍ଗାଳୀ ? ଆମ ଲୋକଙ୍କ ଧାରଣା କଣ ଭୁଲ ? ବିଚାରିଲି ଦିନେ ତ ଆମ ଠାକୁର ଚକାଡ଼ୋଳା, ବଙ୍ଗଳାର ବୋଲି କହିବେ, ପଡ଼ୋଶୀ। ଭାରତକୁ ଯିଏ ପହିଲେ ସଂସ୍କୃତ ଭାଷାରେ ରାଗ-ତାଳ-ସ୍ୱର-ଛନ୍ଦ ଯୁକ୍ତ ସଂଗୀତ ଶୁଣାଇଲେ ସେ କ'ଣ ଓଡ଼ିଆ ପୁଅ ନୁହଁନ୍ତି ? x x x ଭାରି ବାଧିଲା ମୋତେ। ଛବି ଦେଖା ସରାଗ ଉଭେଇ ଗଲା ସେଇଠି। ସେଇ ସିନେମା ଘରେ ଜଗନ୍ନାଥଙ୍କୁ ସୁମରି ମହାକବି ଜୟଦେବଙ୍କ ଚରଣାଶ୍ରିତ ହୋଇ ମନେ ମନେ ପଣ କଲି ଜୟଦେବ ନାଟକ ଲେଖିବି ବୋଲି। x x x ୧।୫।୧୯୪୩ ତାରିଖରେ ଜୟଦେବ ନାଟକ ସଞ୍ଚସ୍ଥ ହେଲା। x x x ସମସ୍ତଙ୍କ ମୁହଁରୁ ଏକ କଥା ଯେ- କବିଚନ୍ଦ୍ର ଆମର ଜୟଦେବଙ୍କୁ 'ଆମର' ବୋଲି ଚିହ୍ନାଇ ଓଡ଼ିଆତ୍ୱ ବଜାୟ ରଖିଲେ। ପ୍ରତ୍ୟହ ରଂଗମଂଚରେ ଦର୍ଶକ ସଂଖ୍ୟା ବଢ଼ିବାକୁ ଲାଗିଲା। ଏକା କଟକରେ ନୁହେଁ-ସାରା ଓଡ଼ିଶାରେ ଜୟଦେବ ନାଟକର ଭୁରି ଭୁରି ପ୍ରଶଂସା ମୁଖରିତ ହେଲା।'

ନାଟକ ଆଇମା କାହାଣୀ ନୁହେଁ। ନାଟକ ପାଇଁ ଦ୍ୱନ୍ଦ ଅପରିହାର୍ଯ୍ୟ। ଦ୍ୱାଦଶ ଶତାବ୍ଦୀର ଜଣେ କବିଙ୍କ ଜୀବନୀ ଓ ରଚନା ସଂପର୍କରେ ଦ୍ୱନ୍ଦାତ୍ମକ ପରିସ୍ଥିତିଟିଏ ଖୋଜି ପାଇବା ଚରମ ସମସ୍ୟା। କିନ୍ତୁ ଏ ସମସ୍ୟାକୁ ଅବଲୀଳା କ୍ରମେ ଅତିକ୍ରମ କରିଛନ୍ତି କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ। ଅଭିମାନିନୀ ରାଧାଙ୍କ ମାନଭଂଜନ ପାଇଁ କୃଷ୍ଣ ରାଧାଙ୍କ କୁଞ୍ଜରେ ଉପସ୍ଥିତ। ତଥାପି ମାନ ଭାଂଗୁ ନାହିଁ। ନାରୀର ହୃଦୟ କିଣିବାକୁ ଚାଟୁବାଣୀ ବଡ଼ ଅସ୍ତ୍ର। କୃଷ୍ଣ ଚାଟୁବାଣୀ କଲେ-

ବଦସି ଯଦି କିଞ୍ଚିଦପି ଦନ୍ତରୁଚିକୌମୁଦୀ
ହରତି ଦରତିମିରମତିଘୋରମ୍।
ସ୍ଫୁରଦଧରସୀଧବେ ତବ ବଦନଚନ୍ଦ୍ରମା
ରୋଚୟତୁ ଲୋଚନ-ଚକୋରମ୍।
ପ୍ରିୟେ ! ଚାରୁଶୀଳେ, ମୁଂଚ ମୟି ମାନମନିଦାନମ୍।
ସପଦି ମଦନାନଳୋ ଦହତି ମମ ମାନସଂ
ଦେହି ମୁଖକମଳମଧୁପାନମ୍
x x x x x x x

ତଥାପି ରାଧାଙ୍କର ମାନ ଭାଙ୍ଗୁ ନାହିଁ। କବି ଜୟଦେବଙ୍କ ମନକୁ ଗୋଟିଏ ପଦ ଆସୁଛି-

ସ୍ମରଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦପଲ୍ଲବମୁଦାରଂ।

କିନ୍ତୁ ବିବେକ ପ୍ରତିରୋଧ କରୁଛି। କିପରି ଲେଖିବେ କୋମଳ ପତ୍ର ସଦୃଶ ତାଙ୍କର (ରାଧାଙ୍କର) ପାଦ ଯୁଗଳକୁ ଶ୍ରୀକୃଷ୍ଣଙ୍କ ମସ୍ତକରେ ସ୍ଥାପନ କରିବାକୁ ରାଧାଙ୍କୁ ଅନୁନୟ କରୁଛନ୍ତି। ସେ ପରା 'ଦଶାକୃତିକୃତେ'। ସେ ପରା ତାଙ୍କର ଆରାଧ୍ୟ ଦେବତା 'ମାଧବ'। ଦେହି ପଦ ପଲ୍ଲବ ମୁଦାରଂ ଲେଖିବାକୁ ଲେଖନୀ ଚଳୁନାହିଁ।

ଏହାକୁ ଦ୍ୱନ୍ଦ ରୂପେ ଉପସ୍ଥାପିତ କରିଛନ୍ତି କବିଚନ୍ଦ୍ର ଅତି ସୁନ୍ଦର ଭାବେ। ପୁଣି ଅଭିନବ ଗୀତ ଗୋବିନ୍ଦ ଆଉ ଗୋଟିଏ ଦ୍ୱନ୍ଦ ସୃଷ୍ଟି କରିଛି। ପ୍ରଥମରୁ ଦ୍ୱନ୍ଦ ସୃଷ୍ଟି ହୋଇଛି ପଦ୍ମାବତୀଙ୍କୁ ପତ୍ନୀ ରୂପେ ଗ୍ରହଣ କରିବା ନ କରିବା ପ୍ରଶ୍ନ ନେଇ। ଗୋଟିଏ ଦ୍ୱନ୍ଦର ଅବସାନ ପରେ ଆଉ ଗୋଟିଏ ଦ୍ୱନ୍ଦ ମୁଣ୍ଡ ଟେକିଛି। ଗୋଟିଏ ଆପାତ ଦ୍ୱନ୍ଦହୀନ କାହାଣୀ କବିଚନ୍ଦ୍ରଙ୍କ ଲେଖନୀ ମୁନରେ ନାଟ୍ୟରୂପ ଧାରଣ କରିଛି- ନାଟକ ପାଇଛି ଅପୂର୍ବ ସଫଳତା-କବିଚନ୍ଦ୍ର ପାଇଛନ୍ତି ଶ୍ରୀଜଗନ୍ନାଥଙ୍କ ଚାମର ସେବା ଓ ଅନ୍ତେ ବୈଷ୍ଣବାଗ୍ନି ପ୍ରାପ୍ତିର ସନନ୍ଦ ପୁରୀ ମହାରାଜା ଶ୍ରୀ ରାମଚନ୍ଦ୍ର ଦେବଙ୍କ ଠାରୁ।

ଏପରି ଏକ ନାଟକକୁ ମଂଚସ୍ଥ କରିବା ପାଇଁ ଆମ ଗାଁର ଉଦ୍ୟୋକ୍ତାମାନେ ନିଷ୍ପତ୍ତି ନେଇ ଗୋଟିଏ ଭଲକାମ କଲେ। ଚାରି ପାଞ୍ଚ ଦିନ ରିହର୍ସଲ ଚାଲିଲା। ପାଞ୍ଚଦିନ ପରେ ଦେଖାଗଲା ଯେପରି ଆମ ଗାଁରେ ଗୀତ ଗୋବିନ୍ଦର ଚଇତାଳି ବୋହୁଛି। ଯେ ପାର୍ଟ ନେଇଛି, ଯେ ଖୁସିରେ କ'ଣ ହେଉଛି ବୋଲି ରିହର୍ସଲ ଦେଖିବାକୁ ଯାଇଛି- ଯେ ତା ଜୀବନରେ କେବେ ଗୀତ ଗାଇ ନାହିଁ ସେ ବି ଗାଉଛି ଗୀତ ଗୋବିନ୍ଦ। କିଏ ଗାଁ ଦାଣ୍ଡରେ ଚାଲିଗଲା ବେଳେ ଗାଉଛି ଅନିଳ ତରଳ କୁବଳୟନୟନେନ- କିଏ ଗାଧୋଇ ଯାଉ ଯାଉ ଗାଉଛି ଲଳିତ ଲବଙ୍ଗଲତା ପରିଶୀଳନ। ସୋବନୀ ଦାଦି ଗୀତ କେବେ ବୋଲିବାର କେହି ଶୁଣି ନାହାନ୍ତି। ସେ ବି ଯାଉଣୁ ଆସୁଣୁ ବୋଲିଲେ- ନନ୍ଦତି ଚନ୍ଦନମିନ୍ଦୁ କିରଣ ମନୁ ବିନ୍ଦତି ଖେଦମଧୀରମ୍। ସହଜେ ତ ରାଧାନାଥ ଭାଇ ଜୟଦେବ ପାର୍ଟ, ପ୍ରାଣ ଭାଇ ପରାଶର ପାର୍ଟ ନେଇଥିଲେ। ତାଙ୍କର ବୋଲିବା କଥା ବୋଲିଲେ କିନ୍ତୁ ମୁଁ ରିହର୍ସଲ ଦେଖିବାକୁ ଯାଏ ନାହିଁ କି ଗୀତ ବି କେବେ ଗାଏ ନାହିଁ। କେବଳ ଗୀତ ଆବୃତ୍ତି କରେ। ଗୀତ ଗାଇଲେ ତାଳ ଲୟ ଠିକ୍ ରହେ ନାହିଁ। ଦୈବାତ୍ ମୋର ଡାମରାକୁଆ ନିନ୍ଦିତ ସ୍ୱର। ଗାଁ ଦାଣ୍ଡରୁ ପଦେ ପଦେ ଶୁଣି ମୁଁ ମଧ୍ୟ ଗାଇବାକୁ ଆରମ୍ଭ କଲି। ଡ. ଭି. ରାଘବନ ଠିକ୍ କହିଥିଲେ-

କୋ ବା ଭକ୍ତଃ ଏତଦ୍ଦେଶ ପ୍ରତିଷ୍ଠିତଂ
ଜଗନ୍ନାଥଂ ନ ପଶ୍ୟତି
କୋ ବା ସାହିତ୍ୟିକଃ ଏକଦେଶ ପ୍ରସୂତଂ
ସାହିତ୍ୟ ଦର୍ପଣ ନାଧୀତେ

କୋ ବା ଗାୟକଃ ଏତଦେଶ ପ୍ରସୂତଂ
ଗୀତ ଗୋବିନ୍ଦଂ ନ ଗାୟତି ।

ଜୟଦେବ ନାଟକର ଗୋଟିଏ ଦୃଶ୍ୟ ମନେ ପଡୁଛି । ବୁଢ଼ୀଟିଏ ବାଇଗଣ କିଆରୀରେ ବାଇଗଣ ତୋଳୁଛି । ଗୀତ ଗୋବିନ୍ଦରୁ ଗାଉଛି-

ରାଧାବଦନବିଲୋକନବିକଶିତ
ବିବିଧବିକାରବିଭଙ୍ଗମ୍
ଜଳନିଧିମିବ ବିଧୁମଣ୍ଡଳଦର୍ଶନ
ତରଳିତତୁଙ୍ଗତରଙ୍ଗମ୍
ହରିମେକରସଂ, ଚିରମଭିଳଷିତବିଳାସମ୍
ସା ଦଦର୍ଶ ଗୁରୁହର୍ଷବଶମ୍ବଦବଦନମନଙ୍ଗନିକାଶମ୍ ।

ଏ ଦୃଶ୍ୟଟି ନାଟ୍ୟକାରଙ୍କର କଳ୍ପନା ପ୍ରସୂତ, ଅଥଚ ବାସ୍ତବତାର କେତେ ନିକଟବର୍ତ୍ତୀ ! ତା ନ ହୋଇଥିଲେ ଆମେ କିଛି ନ ବୁଝି ଏ ଗୀତ ଗାଇଥାନ୍ତୁ କାହିଁକି ?

ସଂସ୍କୃତ କାବ୍ୟରେ ଅର୍ଥାଳଙ୍କାରର ପ୍ରୟୋଗ କିଛି ନୂଆ କଥା ନୁହେଁ. କିନ୍ତୁ ଜୟଦେବଙ୍କ ଅର୍ଥାଳଙ୍କାରର ବିଶେଷତ୍ୱ ରହିଛି । କାନ୍ତ ଏବଂ କୋମଳ । ସହଜ ଆଉ ସରଳ । ବିନା ସ୍ୱର ଲୟରେ କେବଳ ଆବୃତ୍ତି କଲେ ବି ମନ ଆନନ୍ଦରେ ନାଚି ଉଠେ, ଅର୍ଥ ବୁଝ କି ନ ବୁଝ । ଶ୍ରୋତାର କାନରେ ଅମୃତ ବର୍ଷେ । ମନେହୁଏ ସେ ଯେପରି ସଂଗୀତ ଶୁଣୁ ନାହିଁ । ଶୁଣୁଛି ରାଧାଙ୍କର ପଦ ନୂପୁରର ନିକ୍ୱଣ ଅଥବା ଦ୍ରୁତ ଲୟରେ ମୋହନ ବଂଶୀ । କଳ ନିନାଦିନୀ ଗିରୀ ନିର୍ଝରିଣୀର ସ୍ୱର ଅଥବା ଚିଲିକାର କଳକଳ ଛଳ ଛଳ ଧ୍ୱନି । ଏହାକୁ ଶୁଣିଲେ ଓଡ଼ିଆ ସଂଗୀତ ବୋଲି ଭ୍ରମ ସୃଷ୍ଟି ହୁଏ ।

ଗୀତ ଗୋବିନ୍ଦ ଶ୍ଳୋକ ଗୁଡ଼ିକର ସ୍ୱର ସଂଯୋଜନା କରିଥିଲେ ଭ୍ରମର ଭାଇ । କି ସୁନ୍ଦର ସେ ସ୍ୱର ।

କେତେ ମନଛୁଆଁ । ପୁଣି କେତେ ସହଜ ଏବଂ ସରଳ । ଗୋଟିଏ ପଲ୍ଲୀ ଲଳନାର ଛନ୍ଦାୟିତ ଗତି ଭଳି । ସ୍ୱର ଆପଣାଛାଏଁ ମନେ ରହିଯାଏ । ଜୟଦେବ ଗୀତଗୋବିନ୍ଦ ଶେଷରେ ଲେଖିଥିଲେ- ଲୋକମାନେ ଯେତେଦିନ ପର୍ଯ୍ୟନ୍ତ ଗୀତ ଗୋବିନ୍ଦ ଗାନ କରୁଥିବେ ସେତେଦିନ ପର୍ଯ୍ୟନ୍ତ ମଦିରାର ମାଦକତା, ଶର୍କରାର ସ୍ୱାଦୁ, ଅମୃତର ଅମୃତତ୍ୱ, ପ୍ରଣୟିନୀ ସୁଧାଧରର ମାଧୁର୍ଯ୍ୟ ନିଷ୍ପ୍ରଭ, ନୀରସ, ବୋଧ ହେଉଥିବ ।

ସ୍ୱାଧୀ ମାଧ୍ୱୀକଚିନ୍ତା ନ ଭବତି
ଭବତଃ ଶର୍କରେ କର୍କରାସି

ଦ୍ରାକ୍ଷେ ଦ୍ରକ୍ଷ୍ୟନ୍ତି କେ ତ୍ୱାମମୃତମମୃତମସି
କ୍ଷୀର ନୀରଂ ରସସ୍ତେ
ମାକନ୍ଦ କ୍ରନ୍ଦ କାନ୍ତାଧର ଧରଣୀତଳଂ
ଗଚ୍ଛ ଯଚ୍ଛନ୍ତି ଯାବଦ୍
ଭାବଂ ଶୃଙ୍ଗାରସାରସ୍ୱତମିହ
ଜୟଦେବସ୍ୟ ବିଶ୍ୱଗ୍ ବଚାଂସି

ଏଥିରେ ଅତିଶୟୋକ୍ତି ନାହିଁ । ଏହାହିଁ ବାସ୍ତବତା ।

ବଙ୍କିମ୍ ଚନ୍ଦ୍ରଙ୍କର ପ୍ରସିଦ୍ଧ ବନ୍ଦେ ମାତରଂ ସଂଗୀତ ଜୟଦେବଙ୍କ ଗୀତଗୋବିନ୍ଦ ଦ୍ୱାରା ପ୍ରଭାବିତ ହୋଇଥିବା ଶ୍ରୀ ସୁଖମୟ ମୁଖର୍ଜ୍ଜୀ ସ୍ୱୀକାର କରିଛନ୍ତି :

In this he (Bankim Chandra) seems to have been influenced and inspired by the innovative example of Jayadev in his Gitagovinda wherein the Sanskrit of classical grandeur has assumed the sweetness and lucidity of the prevelent dialects.

ଏଇଭଳି ଏକ ମହାନ କୃତି ମଂଚସ୍ଥ କରିବାର ସୌଭାଗ୍ୟ ଆମକୁ ମିଳି ଥିଲା । ଆଜି ମୁଁ ଚିନ୍ତା କରିପାରୁ ନାହିଁ ଏତେଗୁଡ଼ିଏ ସଂସ୍କୃତ ଶ୍ଳୋକ ସମ୍ବଳିତ ନାଟକକୁ ରୂପ ଦେବା ପାଇଁ ସେମାନେ କିପରି ସାହସ କଲେ ? ଏହା ପଛରେ ଥାଇପାରେ ରସାଳ ମନର ଆବେଗ-ଥାଇପାରେ ରାସର ଐତିହ୍ୟ ।

ନାଟକ ଶେଷ ହେଲା, କିନ୍ତୁ ଆମ ସମସ୍ତଙ୍କ ମନରେ ତାର ସଂଗୀତ ଅଲିଭା ଗାରଟିଏ ଟାଣି ଦେଇଗଲା । ତୃଷ୍ଣା ମେଣ୍ଟି ନଥିଲା- ଦୁଇ ବା ତିନିବର୍ଷ ପରେ ପୁଣି ଏହା ମଞ୍ଚସ୍ଥ ହେଲା । ସେଥରକ ପ୍ରାଣ ଭାଇ ଜୟଦେବ ଭୂମିକାରେ ଅବତୀର୍ଣ୍ଣ ହେଲେ ।

ମୁଁ ଓ ସୁଦର୍ଶନ ହାଇସ୍କୁଲ ବୋର୍ଡିଂରେ ରହୁଥିଲୁ । ଶନିବାର ଦିନ ରାତିରେ ବକ୍ତୃତା ପ୍ରତିଯୋଗିତା, ଅନ୍ତାକ୍ଷରୀ ହୁଏ । ଅନ୍ତାକ୍ଷରୀରେ ସୁଦର୍ଶନ ଓ ମୁଁ ଗୀତ ଗୋବିନ୍ଦର ବିଭିନ୍ନ ଶ୍ଳୋକ ବୋଲୁ । ମୁଁ ଠ ଠା କରି ଗାଏ, ସେ ସୁନ୍ଦର ଗାଏ । ସଂସ୍କୃତ ଶ୍ଳୋକର ଏପରି ମଧୁର ସ୍ୱର ସମସ୍ତଙ୍କୁ ଚକିତ କରେ ।

୧୯୫୮ ମସିହାରେ ମୁଁ ପୁରୀ କଲେଜର ଦ୍ୱିତୀୟ ବର୍ଷର ଛାତ୍ର । ସୁଦର୍ଶନ, ପ୍ରାଣ ଭାଇ, ଲୋକି ଭାଇ, ମୁଁ ସୁନୁ ଗୋରଡ଼ି ମେସ୍‌ରେ ରହୁଥାଉ । ସେତେବେଳେ ଶ୍ରୀ ଆଶିଷ ମହାପାତ୍ର (ସଂପ୍ରତି ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଜଣେ ପ୍ରମୁଖ ସଦସ୍ୟ) କଲେଜ ଇଉନିଅନର ସଭାପତି ପଦ ପାଇଁ ନିଜକୁ ପ୍ରସ୍ତୁତ କରୁଥାନ୍ତି । ସେଥିପାଇଁ ଛାତ୍ର ଫେଡେରେସନର ଗୋଟିଏ ବଡ଼ ସଭାର ଆୟୋଜନ କରୁଥାନ୍ତି । ଶ୍ରୀ ହରିଶ୍ଚନ୍ଦ୍ର

ବକ୍ସିପାତ୍ର (ସେତେବେଳେ ସେ ଛାତ୍ର ନେତା) ମୁଖ୍ୟ ଅତିଥି ହୋଇ ଆସିବାର ଥାଏ। ଦିନେ ମୋର ବଂଧୁ ବଂଶୀଧର ବିଶ୍ୱାଳ (ଏବେ କଂଗ୍ରେସର ଜଣେ ପ୍ରମୁଖ ସଦସ୍ୟ) ଆସି କହିଲେ ଦୁର୍ଗା ଭାଇ ! ଛାତ୍ର ଫେଡେରେସନ ମିଟିଂରେ ଗୋଟିଏ ଏକାଙ୍କିକା ମଞ୍ଚସ୍ଥ କରିବାକୁ ଆଶିଷବାବୁ କହିଛନ୍ତି। ତୁମେ ଗୋଟିଏ ବହି ସିଲେକ୍ଟ କର। କିଛି ନଭାବି କହିଲି ଜୟଦେବ ନାଟକରୁ ତିନୋଟି ଦୃଶ୍ୟ ମଞ୍ଚସ୍ଥ କରିବା। ଜୟଦେବ ନାଁ ଶୁଣି ସୁଦର୍ଶନ ଆନନ୍ଦରେ ଡେଇଁ ପଡ଼ିଲା। ରଘୁ (ରଘୁନାଥ ବରାଳ), ପ୍ରାଣ ଭାଇ, ଲୋକି ଭାଇ ଖୁସି ହେଲେ। ତିନୋଟି ଭଲ ଭଲ ସିନ୍ ସିଲେକ୍ଟ କରାଗଲା। ପ୍ରାଣ ଭାଇ ଥିଲେ ଗୀତ ଗାଇବାକୁ। ଲୋକି ଭାଇ ତବଲା ସଂଗତ କରିବାକୁ। ସୁଦର୍ଶନ, ବଂଶୀବାବୁ ଏବଂ ଆଉ ଦୁଇଜଣଙ୍କୁ ନେଇ ମୋ ରୁମ୍‌ରେ ରିହର୍ସାଲ ଚାଲିଲା। ନାଟକଟି ସୁରୁଖୁରୁରେ ପୁରୀ ନାରୀ ସେବା ସଂଘ ସଦନରେ ମଞ୍ଚସ୍ଥ ହେଲା।

ନାଟକ ଶେଷ ହେବା ପରେ ଆମେ ଷ୍ଟେଜ୍ ବାହାରକୁ ଆସିଲୁ। ପ୍ରାଣଭାଇଙ୍କ ସହିତ ହାର୍ମୋନିଅମ୍‌ରେ ସଂଗତ କରୁଥିଲେ ପ୍ରସିଦ୍ଧ ସଂଗୀତଜ୍ଞ ମାର୍କଣ୍ଡେୟ ମହାପାତ୍ର। ସଂଗୀତ ପୁରୀର ଜୀବନଧାରାରେ ଅଂଗୀଭୂତ। କିଛି ଦର୍ଶକ ଶ୍ରୀ ମହାପାତ୍ରଙ୍କୁ ବଧେଇ ଜଣାଇଲେ ଗୀତି ଗୋବିନ୍ଦର ମଧୁର ସ୍ୱର ପାଇଁ। ସେ କିନ୍ତୁ ପ୍ରାଣଭାଇଙ୍କୁ, ଦେଖାଇ ଦେଲେ- 'ମୁଁ ନୁହେଁ- ୟେ ଗାଉଥିଲା।' ପରେ ୧୯୮୨ ମସିହାରେ ଯେତେବେଳେ ଜୟଦେବ ଚଳଚ୍ଚିତ୍ର ପ୍ରସ୍ତୁତ ହେଲା ସେତେବେଳେ ସୁଦର୍ଶନ ଏହାର Chief Asst. Director ହେଲା।

୧୯୬୦ ମସିହାରେ ଭାଲିଆବିଲିର ସୁଶୀଳ, ରାଧୁ, ଦୁର୍ଗା ଆସି ତାଙ୍କ ଗାଁରେ ଗୋଟିଏ ନାଟକ ମଂଚସ୍ଥ କରିବାକୁ ଆମର ସହଯୋଗ ଚାହିଁଲେ। ପ୍ରଥମ କରି ନାଟକଟିଏ ମଂଚସ୍ଥ କରିବାକୁ ସାହସ କରୁଛନ୍ତି। ତାଙ୍କର ପ୍ରସ୍ତାବ ଥିଲା ନାଟକ ଶିଖାଇବା ଠାରୁ ଆରମ୍ଭ କରି ନାଟକ ଶେଷ ହେବା ପର୍ଯ୍ୟନ୍ତ ସବୁ ଆମକୁ ଦେଖାଶୁଣା କରିବାକୁ ହେବ। ଭାଲିଆବିଲି ଆମ ଗାଁଠାରୁ ଅଳ୍ପଦୂର। ଆମେ ରାଜି ହେଲୁ। ନାଟକ ମନୋନୀତ ହେଲା ଜୟଦେବ। ଭଗି ଭାଇ, ଆଦିଆଦି, ବିଶିଦାଦି, ରାଧାନାଥ ଭାଇ, ରବି ଭାଇ ଓ ମୁଁ ପ୍ରତିଦିନ ଯାଉ ତାଙ୍କୁ ସାହାଯ୍ୟ କରୁ। ନାଟକଟି ସଫଳ ରୂପେ ଅଭିନୀତ ହେଲା।

ଇତିମଧ୍ୟରେ ଗୀତଗୋବିନ୍ଦର ଅନେକ ସଂଗୀତ ଶୁଣିଛି। କିନ୍ତୁ ଭ୍ରମରଭାଇ ଯେଉଁ ସ୍ୱର ସଂଯୋଜନା କରିଥିଲେ ତା ଭଳି ଏତେ ହୃଦୟସ୍ପର୍ଶୀ ସ୍ୱର ମୁଁ ଆଉ ଶୁଣି ନାହିଁ। ହଁ, ଥରେ ଗୀତ ଗୋବିନ୍ଦ ନୃତ୍ୟ ନାଟିକା ଦୂରଦର୍ଶନରେ ପ୍ରସାରିତ ହୋଇଥିଲା। ଗୁଜୁରାଟର ଶିଳ୍ପୀମାନେ ଲୋକନୃତ୍ୟ ଶୈଳୀରେ ଏହାକୁ ଉପସ୍ଥାପିତ କରୁଥିଲେ। ଗୋଟିଏ ସାରଙ୍ଗୀ, ଗୋଟିଏ ଡୋଲକ ଆଉ ହଳେ ମଞ୍ଜିରାରେ ସଂଗତ

ହେଉଥିଲା । ସେ ସ୍ୱର ବି ଥିଲା ଖୁବ୍ ମନମତାଣିଆ-ଭ୍ରମରଭାଇଙ୍କ ସ୍ୱର ସଂଯୋଜନା ଭଳି ହୃଦୟଗ୍ରାହୀ । ଗୀତଗୋବିନ୍ଦର ଇଂରାଜୀ ଅନୁବାଦକ Barbara Stoler Miller ତାଙ୍କ "The Gitagovinda of Jayadev" ପୁସ୍ତକରେ ଲେଖିଛନ୍ତି-

By the end of the thirteenth century, the Gitagovinda was known in western India. A stone inscription of Maharaja Sarangadev Vaghela of Anatullapattan dated AD 1291 opens with Jayadev's invocation to krishna in his ten incarnate forms x x. The Gitagovinda was probably brought by Vaishnaba pilgrims who heard it at Puri or some other eastern center of the Krishna cult.

ତେଣୁ ଗୀତଗୋବିନ୍ଦ ଯେ ଗୁଜୁରାଟ ସାଂସ୍କୃତିକ ଜୀବନର ଏକ ଅଂଗ ହୋଇଥିବ ଏଥିରେ ସନ୍ଦେହ ନାହିଁ । ସେମାନଙ୍କର ପରିବେଷଣ ଶୈଳୀ ଏଇ ସଂସ୍କୃତିର ନିଷ୍ଠୟ ଏକ ଆଲେଖ୍ୟ ।

ପାଖଆଖ ପଚାଶ ଖଣ୍ଡ ଗାଁରେ ଆମ ନାଟ୍ୟ ସଂପ୍ରଦାୟକୁ ଗୁରୁ ବୋଲି ମାନନ୍ତି । ତାଙ୍କ ଗାଁରେ ନାଟକ ଆୟୋଜନ ହେଲେ, ନିର୍ଦ୍ଦେଶନା ଦେବାକୁ, ପରାମର୍ଶ ଦେବାକୁ ଆମକୁ ଡାକନ୍ତି । ଭଗିଭାଇ ତିନି ଚାରିଦିନ ଆଗରୁ ସେ ଗାଁରେ ଡେରା ପକାନ୍ତି । ନାଟକ ଦିନ ପେଟ୍ରୋମାକ୍ସ ଲାଇଟ୍ ଜାଳି ୧୦/୧୫ ଜଣଙ୍କୁ ସାଥିରେ ଧରି ଭଗିଭାଇ ଚାଲନ୍ତି ପଟୁଆରରେ । ଗ୍ରାମବାସୀମାନେ ସମ୍ମାନ ଜଣାନ୍ତି, ପାଛୋଟି ନିଅନ୍ତି, ପେଣ୍ଡାଲ ଭିତରେ ବସିବାର ଆୟୋଜନ କରନ୍ତି । ଭଗିଭାଇଙ୍କ ସାଥିରେ ମୁଁ ବିନାୟକ ପୁର, ଅଚ୍ୟୁତପୁର, ମକୁନ୍ଦଦାସପୁର, କୁଞ୍ଜର ଯାଇଛି ନାଟକ ଦେଖିବାକୁ । ରାଧାନାଥ ଭାଇ ତାଙ୍କ ସ୍ମୃତି ଚାରଣ କରି କହନ୍ତି, ୧୯୪୫ ବା ୪୬ ମସିହାରେ ରାଜସରେ ଯେଉଁ ନାଟକ ଅଭିନୀତ ହୋଇଥିଲା ସେଥିରେ ସେ ଗୀତ ବୋଲି ଡ୍ୟାନ୍ସ କରିଥିଲେ । ଗୀତଟି ବି ତାଙ୍କର ଅବିକଳ ମନେଅଛି-

ମଉଳା ଏ ମୋର ଫୁଲ ବନେ
ଚହଟି ଉଠଇ ଜହ୍ନରାତି
ପରାଣବଂଧୁ ଆସିବେ ବୋଲି
ଦୁଲୁକି ଦୁଲୁକି ଉଠେ ଛାତି
କେତେ କେତେ ଭାବ ହୃଦେଧରି
ସାଇତି ରଖିଛି ବୁକୁ ଭରି
କହିବାକୁ ଯେବେ ସରମ ନ ଲାଗେ

ଅଭିମାନ ତେଜି କହିବି ତୋ ଆଗେ
ଛନଛନିଆ କଅଁଳ ଘାସେ
ବିଛାଇ ବିଛଣା କାନି ପାତି
ମଉଳା ଏ ମୋର ଫୁଲବନେ
ଚହଟି ଉଠଇ କହ୍ଲରାତି ।

ଯୋଗ ଦେଖ-

ଏହାର ଦୁଇବର୍ଷ ପରେ ସେଇ ଗାଁରେ ତାଙ୍କର ବିବାହ ହେଲା । ତାଙ୍କ ସ୍ତ୍ରୀ ତାଙ୍କୁ ଡ୍ୟାନ୍‌ସ ଜଥା ଉଘେଇ ଚିଡ଼ାଇଲେ । ଏବେ ବି କୁଆଡ଼େ ଚିଡ଼ାଉଛନ୍ତି ।

ତାଙ୍କର ମନେଅଛି ୧୯୪୮ ବା ୪୯ ମସିହାରେ ହରିପୁରର ବ୍ରଜ ଶତପଥୀ ତାଙ୍କ ଗାଁରେ ଗୋଟିଏ ନାଟକ ମଂଚସ୍ଥ କରିବାକୁ ଆୟୋଜନ କଲେ । ସେ ପ୍ରତିବର୍ଷ ଆମ ଗାଁ ଡ୍ରାମାକୁ ଆସନ୍ତି- ସହଯୋଗ କରନ୍ତି । ପନ୍ଦର ଦିନ ଆଗରୁ ଭଗିଭାଇ, ଭ୍ରମର ଭାଇ ଯାଇ ନିର୍ଦ୍ଦେଶନା ଦେଲେ । ନାଟକ ମଂଚସ୍ଥ ହେବା ଦିନ ଭାର୍ଗବୀ ନଈରେ ଅକାତକାତ ପାଣି । ପୋଲ ତିଆରି ହୋଇ ନଥାଏ । ନାଟକ ଦେଖିବା ନିଶା ତ । ଆମ ଗାଁରୁ ଯେଉଁ ଦଶ କି ପନ୍ଦର ଜଣ ନାଟକ ଦେଖିବା ପାଇଁ ବାହାରିଥିଲେ ଡଙ୍ଗାଟିଏ ଭଡ଼ା କରି ନଈ ପାର ହେଲେ । ନାଟକ ଦେଖି ଫେରିଲେ ।

ଏହିଭଳି ପାରସ୍ପରିକ ସହଯୋଗରେ ଗୋଟିଏ ସଂସ୍କୃତିର ବିକାଶ ଘଟୁଥିଲା । ଗୋଟିଏ ଦୀପରୁ ଆଉ ଗୋଟିଏ ଦୀପ ଆଲୋକିତ ହେଉଥିଲା । ଗୋଟିଏ ଗାଁରେ ନାଟକ ଦେଖିଲେ ଅନ୍ୟ ଗାଁ ଲୋକେ ନାଟକଟିଏ ମଂଚସ୍ଥ କରିବାକୁ ଅଣ୍ଟାଭିଡ଼ି ବାହାରୁଥିଲେ । ସହଯୋଗର ହାତ ଆମେ ବଢ଼େଇ ଦେଉଥିଲୁ ।

୧୯୫୪ ମସିହା ପରଠାରୁ ଆମ ଗାଁରେ ଗୋଟିଏ ନୂଆ ପବନ ବହିଲା । ଗ୍ରାମଗୋଷ୍ଠୀ ଉନ୍ନୟନ ଯୋଜନାରେ ଆମ ଗାଁକୁ ମଡ଼େଲ ଭିଲେଜ ରୂପେ ଗ୍ରହଣ କରାଗଲା । ଗାଁରେ ଗୋଟିଏ ଗୋଷ୍ଠୀ ଉନ୍ନୟନ କେନ୍ଦ୍ର ସ୍ଥାପିତ ହେଲା ୧୯୫୬ ମସିହାରେ । ପାଠାଗାର ଟିଏ ସ୍ଥାପିତ ହେଲା । ସାନ ଭଗିଭାଇ ତାଙ୍କ ଲାଇବ୍ରେରିର ସବୁ ବହି ଦାନ କରିଦେଲେ ଏ ପାଠାଗାରକୁ । ଖୋଳ, ଜୁଗିତବଲା ସରକାରଙ୍କ ପକ୍ଷରୁ ଯୋଗାଇ ଦିଆଗଲା । ମହିଳା ସମିତି, ଯୁବକ ସଂଘ ଗଢ଼ାଗଲା । ରାସ୍ତାଘାଟ ତିଆରି ହେଲା । ୧୯୩୩ ମସିହାରୁ ଯେଉଁ ଗୋଷ୍ଠୀଚେତନାର ଉନ୍ମେଷ ମଂଚ ମାଧ୍ୟମରେ ଘଟିଥିଲା ତାହା ଡାଳପତ୍ର ମେଲି ଗାଁର ସାମୂହିକ ଉନ୍ନତି ଦିଗକୁ ସଂପ୍ରସାରିତ ହେଲା ।

ସେଇବର୍ଷ ଗାଁରେ ଗୋଟିଏ ମାଇନର ସ୍କୁଲ ସ୍ଥାପନ ପାଇଁ ଯୋଗାଡ଼ ଚାଲିଥାଏ । ସେଥିପାଇଁ କିଛି ଅର୍ଥ ଆବଶ୍ୟକ । ତେଣୁ ଟିକେଟ ବିକ୍ରି କରି ଡ୍ରାମା କରିବା ପାଇଁ ସ୍ଥିର

ହେଲା । ଗୋଟିଏ- ଅଶ୍ୱିନୀ କୁମାରଙ୍କ 'ଜାନକୀ' । ଅନ୍ୟଟି ମୋର ମନେ ପଡୁନାହିଁ । ପୂର୍ବରୁ ଥରେ ଜାନକୀ ଆମ ମଂଚରେ ଅଭିନୀତ ହୋଇଥିଲା । ବୋଧହୁଏ ୧୯୫୨ କି ୧୯୫୩ ମସିହାରେ । ଏହାକୁ ପୁଣି ଥରେ ମଂଚସ୍ଥ କରିବାକୁ ନିଷ୍ପତ୍ତି ହେଲା ।

ନିର୍ବାସିତା ସୀତାର କାରୁଣ୍ୟମୟ କାହାଣୀ ଉପରେ ଗଢ଼ି ଉଠିଛି 'ଜାନକୀ' । ରାମାୟଣର ସେଇ ବହୁ ଚର୍ଚ୍ଚିତ, ବହୁ ପଠିତ ସୀତା ବନବାସ, ଅଶ୍ୱମେଧ ଯଜ୍ଞ, ଲବକୁଶ ଜନ୍ମ ଏବଂ ସୀତାଙ୍କର ଧରିତ୍ରୀ ଗର୍ଭରେ ଶେଷ ଆଶ୍ରୟର ଇତିବୃତ୍ତ । କିନ୍ତୁ ରାମାୟଣର ଏଇ ଜାନକୀ ଚରିତ୍ରଟି ଅଶ୍ୱିନୀ କୁମାରଙ୍କ ଲେଖନୀରେ ଜଣେ ସାଧାରଣ ନାରୀ ରୂପରେ ଦର୍ଶକ ସମ୍ମୁଖକୁ ଆସିଛି । ଜାନକୀ ଭିତରେ ସେମାନେ ଅନୁଭବ କରିଛନ୍ତି ଜଣେ ନାରୀର ଅସହାୟତା-ଶୁଣିଛନ୍ତି ତାର ବିଡ଼ମ୍ବନାର କାହାଣୀ ପୁଣି ଦେଖିଛନ୍ତି ତା'ର ସର୍ବସଂହା ରୂପ । ସେଥିପାଇଁ ପୌରାଣିକ ହେଲେ ବି ଦର୍ଶକମାନଙ୍କ ହୃଦୟରେ ଜାନକୀର ସ୍ଥାନ ସ୍ୱତନ୍ତ୍ର । ଦ୍ୱିତୀୟ ଥର ପାଇଁ ଏହାକୁ ମଂଚସ୍ଥ କରିବା ପଛରେ ତେଣୁ କୌଣସି ଦ୍ୱିଧା ନଥିଲା ।

ବିଶିଷ୍ଟ ମଂଚଶିଳ୍ପୀ କୃଷ୍ଣ ଦାସ ମୁଖର୍ଜୀ ପୁରୀରୁ ଆସିଥାନ୍ତି । ବ୍ୟାଣ୍ଡେଜ ତୁଳାକୁ ଟିକିଏ ଟିକିଏ କାଟି, ସ୍ପିରିଟ୍ ଗମ୍ ଦେଇ ସେ ହନୁମାନ ମୁହଁ ତିଆରି କରୁଥାନ୍ତି । ଖୁବ୍ ଧୀର ସ୍ଥିର ଓ ଅବିଚଳିତ ଭାବେ । ପରେ ଦୂରଦର୍ଶନରେ ରାମାୟଣ ସିରିଅଲ ଦେଖିଛି । ସେଥିରେ ହନୁମାନର ପେଣ୍ଟିଂ ଏବଂ କୃଷ୍ଣଦାସ ମୁଖର୍ଜୀଙ୍କ ପେଣ୍ଟିଂ ମଧ୍ୟରେ ମୁଁ କୌଣସି ପାର୍ଥକ୍ୟ ଅନୁଭବ କରିପାରି ନାହିଁ ।

ସେଦିନ ଆଉ ରାମାୟଣ ସିରିଅଲ ମଧ୍ୟରେ କାହିଁ କେତେ ବର୍ଷର ବ୍ୟବଧାନ । ପେଣ୍ଟିଂରେ କେତେ କେତେ ନୂଆ ନୂଆ ଟେକନିକ୍, କେତେ କେତେ ନୂଆ ପ୍ରସାଧନ ସାମଗ୍ରୀ ସାମିଲ ହୋଇଛି କିନ୍ତୁ ଚିତ୍ରକର ତୁଳୀରେ ଯେଉଁ ନିତ୍ୟ ନୂତନତା ରହିଛି ତାହା କାଳଜୟୀ ।

୧୯୫୬ ମସିହାଠାରୁଆମ ପୀଢ଼ି ଉପରେ ଦାୟିତ୍ୱ ପଡ଼ିଲା । ଦାୟିତ୍ୱ କିଏ କାହାକୁ ଦିଏ ନାହିଁ- କେହି କାହାଠାରୁ ନିଏ ନାହିଁ । ସମୟର ପ୍ରବାହ ଭିତରେ ଆପଣାଛାଏଁ ସବୁ ଘଟିଯାଏ । ମୋ ଅଜଣାରେ ମୁଁ ସମସ୍ତଙ୍କ ନିକଟରେ ଉତ୍ତରଦାୟୀ ହୋଇ ପଡ଼ିଲି ।

ସେ ବର୍ଷ ଆମେ ଭାଇ ଭାଉଜ ଓ ଆନନ୍ଦ ଶଙ୍କରଙ୍କର ଯୌତୁକ ମଂଚସ୍ଥ କରିବାକୁ ଯାଉଥାଉ । ମଂଚଟି ପୂର୍ବରୁ ଯେଉଁଠି ଥିଲା ସେଠାରେ ମାଇନର ସ୍କୁଲ ଘର ତିଆରି ହୋଇସାରି ଥିଲା । ନୂଆ ଷ୍ଟେଜ୍‌ଟିଏ ତିଆରି କରିବା ଦରକାର ପଡ଼ିଲା । ମେଳନ ପଡ଼ିଆ ଭିତରେ ଯେଉଁ ଷ୍ଟେଜ୍‌ଟି ଏବେ ମଲା ମଇଁଷି ପରି ମୁହଁମାଡ଼ି ପଡ଼ିଛି ଆମେ ଯୁବକମାନେ ସେତିକି ବେଳେ ତାକୁ ତିଆରି କରିଥିଲୁ ।

ସେ ବର୍ଷ ରଜ ଆଗରୁ ଦୁଇ ତିନି ଅସରା ବର୍ଷା ହୋଇ ଛାଡ଼ି ଯାଇଥାଏ। ଗୋଟିଏ ଶଗଡ଼ ନେଇ ରବି ଭାଇ, ମୁଁ ଏବଂ ପୂର୍ଣ୍ଣ ଗଲୁ କୁଂକରକୁ ଦୁଇଟା ବଡ଼ ବଡ଼ କାଠ ଖୁଣ୍ଟ ଆଣିବାକୁ। ଆମକୁ କିଏ ବଳଦ ଦେବ ? ଶଗଡ଼ ଆମେ ନିଜେ ଟାଣି ଟାଣି ନେଲୁ। କୁଂକର ଗାଁ ଦାଣ୍ଡସାରା କାଦୁଅ। ବାଟ ପ୍ରାୟ ଏକ କିଲୋମିଟର ହେବ। ଶଗଡ଼ ଚକ ଚାଖଣ୍ଡେ ତଳକୁ ଗଳି ପଡୁଛି। ହୁଁପାଣିଆ ହୋଇ ଚାଲି ଆସିଲୁ ସିନା ଯିବୁ କେମିତି ? ରବି ଭାଇ, ପୂର୍ଣ୍ଣ ଶଗଡ଼ ଟାଣିଲେ ମୁଁ ପଛି ଉପରେ ଚଢ଼ି ଆଣ୍ଟେଇଲି। ଓଃ, ସେ ଯେଉଁ ପରିଶ୍ରମ ! ଜୀବନରେ ଆଉ କେବେ ସେପରି କଷ୍ଟ ଉଠାଇ ନାହିଁ।

ସେତେବେଳକୁ ଶ୍ରୀ ସୁନାକର ଭୂୟାଁ ପିପିଲି ଥାନାର ସବ୍ ଇନିସ୍‌ପେକ୍ଟର। ଖୁବ୍ ନାଟ୍ୟ ପ୍ରେମୀ। ନିଜେ ନାଚି ପାରନ୍ତି, ନାଚ ଶିଖାଇ ପାରନ୍ତି, ନିର୍ଦ୍ଦେଶନା ବି ଦିଅନ୍ତି। ସେ ଆମକୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ। ସୁନାକର ବାବୁ ନାଚ ଶିଖାଇଲେ, ନିତ୍ୟାନନ୍ଦକୁ।

ଶିଉଳି ବୋଳା କଳା ମୁଗୁନି ପାହାଚ
ଧୀରେ ଧୀରେ ପାଦ ପକା ସହିଲୋ।
ଚମକି ପଡ଼ିଲେ ତୋ ପତଳା ଛାତି
ରଂଗ କାଂଚଲା ଯିବ ଝାଳରେ ତିନ୍ତି
ଭାରି ଗରା କାଖେ ପରା ନ ପାରିବୁ ସହି ଲୋ।

ଦ୍ୱିତୀୟ ଦିନ ପାଇଁ ଆଉ ଗୋଟିଏ ନାଚ ଶିଖାଇଲେ।

ଚଇତାଳି ବାଆ ଠେଲି ଚହଟ ଚାନ୍ଦନୀ ଲୋ
ଅଭିସାରେ ଚଳେ ରାମା।

କେଜାଣି କେତେଥର ଏଇ ନୃତ୍ୟ ଦୁଇଟି ଆମେ ପରିବେଷଣ କରିଥିବୁ। ସବୁଥର ନୂଆ ଭଳି ଲାଗେ।

ସେ ବର୍ଷ କୌଣସି କାରଣରୁ ଉଦ୍ୟନାଥ ଦାଦି ପେଣ୍ଟିଂ କରିବାକୁ ଆସିପାରିଲେ ନାହିଁ। ମୋତେ ତୁଳୀ ଧରିବାକୁ ପଡ଼ିଲା।

ନାଟକ ଆରମ୍ଭରେ ଗୋଟିଏ ଗୀତ ଥିଲା। ଗୀତ ତ ନୁହେଁ, କାନଭାସ ଉପରେ ଗୋଟିଏ ଅଖ୍ୟାତ ପଲ୍ଲୀର ଦୃଶ୍ୟ କିଏ ଯେପରି ଆଙ୍କି ଦେଇଛି-

ଝାଳ ନାଳ ହୋଇ କିଆରୀ ଡିଆରି
ସାରିଚି ଦିନ ମୂଲିଆ
ଅଢ଼େଇ ପହରେ ଝଙ୍କା ଆମ୍ବ ମୂଳେ
ବସିଚି ହୋଇ ହାଲିଆ ସେ

ପୁଅ ପୁତୁରା ଭାଇ କାହାର
ଘରୁ ଆଣୁଛି ଆହାର ତା'ର ଲୋ।
ନଇ ଆର ପାରି ଗାଁ ଲୋ
(ଆଜି) ମଙ୍ଗୁଳା ହେବ କନିଆଁ
ଶାଢ଼ୀ ମୁଆଁ ଧରି କୁଣିଆ ବାହାର
ଆଗେ ଚାଲେ ମହୁରିଆ।
ଭୁଆସୁଣୀ ଝିଅ ଛାତି ଦକଦକ
ବାନ୍ଧିବ ସେ ନୂଆ ଘର
ବୋହି ଯାଉଥିବ ଲୁହଧାର
ଅଧେ ହସ, ଅଧେ କାନ୍ଦ ତାର।
ତନୁ ପାତେଳୀର କାଖରେ ମାଠିଆ
ମଥାରେ ପଖାଳ କଂସା
ଭରା ଯଉବନ ଚହଲି ପଡୁଛି
ଚାହିଁ ଉଡ଼ି ତ ଯାଉଛି ହଂସା।
ଆଡ଼ ଆଖି ତଳେ ଲାଜ ମିଶା
କେତେ ମହୁଆ ତା ଦରହସା
ସତେ ପାଳିବି ଜାଗର ଓଷା
ଯେବେ ହସି ଅନାଇବ ଯୋଷା।

ସେ ଚମତ୍କାର ଦୃଶ୍ୟଟି ଆଜି ବି ମୋ ଆଖି ଆଗରେ ଭାସି ଉଠୁଛି। ଦିନ ମୂଲିଆଟିଏ ଗଛ ମୂଳେ ହାଲିଆ ହୋଇ ବସିଛି। ଗାମୁଛା କାନିରେ ଝାଳ ପୋଛୁଚି, ବିଞ୍ଚି ହେଉଛି। ଭ୍ରମର ଭାଇ ବଣ୍ଡି ଖଣ୍ଡେ ପିନ୍ଧି, କପାଳରେ ତିଳକ ଚିତା କାଟି, କାଖରେ ଛତା ଜାକି କୁଣିଆଁ ଘର ଚାଲିଛନ୍ତି। କାନ୍ଧରେ ଓହଳିଛି ଗୋଟିଏ ଗାମୁଛାରେ ବନ୍ଧା ଦୁଇପଟକୁ ଦୁଇଟି ପୁଟୁଳି। ଆଗରେ ମହୁରୀ ଫୁଙ୍କି ଫୁଙ୍କି ଗୋପାଳ ମାମୁଁ। ପୋଲିସ ସୁଲଭ ନିଶ ଚାଞ୍ଛି, ମାଠିଆ କାଖେଇ ତନୁ ପାତେଳୀ ବେଶରେ ଓଢ଼ଣା ଟାଣି ଚାଲିଛନ୍ତି ସୁନାକର ବାବୁ। ମଝିରେ ମଝିରେ ଓଢ଼ଣା ଭିତରୁ ମୁହଁ କାଢ଼ି ଦର୍ଶକଙ୍କୁ ଲାକେଇ ଲାକେଇ ଚାହୁଁଛନ୍ତି।

'ମୂଲିଆ' ପରେ 'ଭାଇ ଭାଉଜ' ରାମଚନ୍ଦ୍ର ମିଶ୍ରଙ୍କର ଏକ ସଫଳକୃତି।

ଆପାତ ଦୃଷ୍ଟିରେ ଦୁର୍ବଳ ମଣିଷଟି ଭିତରେ କେତେ ଶକ୍ତି-କେତେ ତିତିକ୍ଷା-ଅନ୍ୟ ପାଇଁ ନିଜକୁ ଜାଳି ଦେବାର ଆକାଙ୍‌କ୍ଷା କେତେ ଦୁର୍ବାର ତା'ର ଏକ ମନୋଜ୍ଞ ଆଲିମ୍ପନ ଭାଇ ଭାଉଜର ଛତ୍ରେ ଛତ୍ରେ ଉର୍ଜ୍ଜସ୍ୱଳ। ସେଇ ଚରିତ୍ରଟି ଭାଇଗର।

ସେ କେତେ ସାଧାରଣ।

ପୁଣି କେତେ ଅସାଧାରଣ।

ସେଦିନ ଗାଁ ସାହୁକାର ଯେତେବେଳେ ମହୀ ବିଲରେ ଜୋର କରି ହଳ ପୂରାଇଲା ସେତିକିବେଳେ ସାନ ସାହୁକାର ବାପର ଚାବି ମୂଠାଟି ହାତେଇବା ପାଇଁ ବୁଢ଼ାକୁ ମରେଇ ମହୀ ମୁଣ୍ଡରେ ଅଠା ବୋଳିଦେଲା। ମହୀକୁ ଜେଲ୍‌ରୁ ମୁକୁଳାଇବା ପାଇଁ ଭାଇଗ ସର୍ବସ୍ୱାନ୍ତ ହେଲା। ପଇସାବଳରେ ସାନ ସାହୁକାର କିଣିଗଲା। ଦଶବର୍ଷ ଜେଲ ହେଲା ମହୀକୁ। ଲକ୍ଷ୍ମଣର ନିଷ୍ଠା ନେଇ ଭାଇଗ ଜଗି ବସିଥିଲା ଭାଉଜ ଦୁଃଖୀକୁ। ମହୀ ଜେଲ ଗଲାବେଳକୁ ଦୁଃଖୀ ପେଟରେ ଦୁଇ ମାସର ଶିଶୁ। ମହୀକୁ ଏକଥା ଜଣା ନାହିଁ। କାହା ପାଟିରେ କିଏ ବାଡ଼ ଦେବ ? ଖଳ ଲୋକେ ତଗ ମେଲିଲେ-

କହରେ ଭାଇଗ ଭେଣ୍ଡା
ଦୁଃଖୀତ ନୁହଇ କଦଳୀ ଗଛ
କେମିତି ଛାଡ଼ିଲା ଭଣ୍ଡା।

ଏ ଅପନିନ୍ଦାକୁ ଖାତିର କରି ନଥିଲା ଭାଇଗ। ତା'ର ବିଶ୍ୱାସ ଥିଲା- 'ପୁଅର ତାତି ବାପ ଦେହରେ ମିଶିବ। ବାପ ଦେହର ରକ୍ତ ପୁଅ ଦେହର ରକ୍ତ ସାଙ୍ଗରେ ମିଶିବ, ରକ୍ତରେ ରକ୍ତରେ କଥାଭାଷା, ଚିହ୍ନାଚିହ୍ନି ହେବେ- କାହାକୁ ପାଟି ଫିଟାଇବାକୁ ପଡ଼ିବ ନାହିଁ।' ପାଟି ଫିଟାଇବା ଦରକାର ପଡ଼ି ନଥାନ୍ତା। ଜେଲ୍‌ରୁ ମୁକୁଳିବା ପରେ ବାପ ପୁଅର ଭେଟ ହୋଇଥାନ୍ତା। ଯୋଉଦିନ ଜେଲ ମିଆଦ ପୂରିବ ସେଦିନ ଭରତ ଆଉ ଦୁଃଖୀକୁ ସାଥିରେ ନେଇ ଭାଇଗ ଅପେକ୍ଷା କରିଥିଲା ଜେଲ୍ ଫାଟକ ନିକଟରେ। ହେଲେ ସେତେବେଳକୁ ଅନେକ ବିଳମ୍ବ ହୋଇ ସାରିଥିଲା। ସାନ ସାହୁକାର ଅନେକ ଆଗରୁ ମହୀ କାନରେ ବିଷ ଭରି ଦେଇଥିଲା- 'ଦୁଃଖୀ ଆଉ ଏଇନେ ଦୁଃଖୀ ହୋଇ ନାହାନ୍ତି। ଭାଇଗଙ୍କ ଅନୁଗ୍ରହରୁ ସେ ଏଇନେ ମହାସୁଖୀ। ଜଉ ପାଖରେ ନିଆଁ ଥୋଇ ଦେଇଗଲୁ, ଫଳ ଆଉ କ'ଣ ହୁଅନ୍ତା ? ମୁଁ ସିନା ମିଛ କହିବି- ଗାଁକୁ ଯା ଦେଖିବୁ ଦୁଃଖୀର କେତେବଡ଼ ପୁଅ। ସାତ ଆଠ ବର୍ଷର। ଭୁଲ୍‌ଟେ ଯେତେବେଳେ ହୋଇଗଲା, ସାଇ ଭାଇ ଧରି ବସିଲେ ଭାଇଗକୁ। ବାଧ୍ୟହୋଇ ମୁଣ୍ଡେଇଲା।'

ସଂସାର ଉପରୁ ମହୀର ବିଶ୍ୱାସ ତୁଟିଗଲା। ଆଖି ଯୋଉ ଆଡ଼କୁ ପାଇଲା, ପାଦ ଯୁଆଡ଼ିକି ଟାଣି ନେଲା ସେଇ ବାଟରେ ସେ ଚାଲିଗଲା, ଭାଇଗ, ଭରତ ଦୁଃଖୀକୁ ପିଠି କରି।

ମନ ଭିତରେ ଜିଦ୍ ବସା ବାନ୍ଧିଲେ ସାତ ସମୁଦ୍ର ଏକା ଡିଆଁକେ ପାରି ହେବାର ସାହସ ଆସେ- ବଳ ଆସେ। ଭାଇଗର ଜିଦ୍ ଭରତକୁ ମଣିଷ କରିବ। ସେଥିପାଇଁ

ଏକମୁହାଁ ଦୌଡ଼ିଛି । ହାତକୁ ଦିହାତ ହେବାର ସ୍ୱପ୍ନ ଭୁଲିଛି- ଗାଁ ଛାଡ଼ି ସହରରେ କୁଲି କାମ କରିଛି । ଦୁଃଖ ସହିଛି-ନିର୍ଯ୍ୟାତନା ସହିଛି କିନ୍ତୁ କିଦ୍‌ରୁ ଓହରି ନାହିଁ । ଭରତକୁ ମଣିଷ କରିଛି । ଗଢ଼ି ତୋଳିଛି ଜଣେ କୃଷିବିଦ୍ୟା ବିଶାରଦ ଉଦୀୟମାନ ଯୁବକ ରୂପେ ।

ଦିନେ ଅତି ଆକସ୍ମିକ ଭାବେ ମହୀ ସହିତ ଭାଇଗର ସାକ୍ଷାତ ହୋଇଛି ଓକିଲ କୁଞ୍ଜବିହାରୀଙ୍କ ଘରେ । ଭାଇଗର ପଦେ କଥାରେ ମହୀର ସନ୍ଦେହ ଦୂର ହୋଇଛି । ସେ ବୁଝିଛି, କେଲ୍‌ରୁ ମୁକୁଳିବା ପରେ ସାନ ସାହୁକାର ତାକୁ ପ୍ରବଞ୍ଚିତ କରିଛି ।

ବହୁ ନାଟକୀୟ ମୁହୂର୍ତ୍ତ ଦେଇ, ଗ୍ରାମ୍ୟ ସ୍ୱରାଜ୍ୟର ଉଦ୍‌ବୋଧନୀ ଗାଇ ଗାଇ, ଅଲିଅଳୀ ଝିଅର ହସକାନ୍ଦ ଭଳି ନାଟକର ସଂଳାପ ଛାତିରେ ଗାର ଟାଣି, ନାଟକଟି ଶେଷ ହୋଇଛି ଭାଇ ଭାଉକର ମିଳନରେ । ପୁଅର ତାତି ବାପ ଦେହରେ ମିଶିଛି । ଭାଇଗର ସ୍ୱପ୍ନ ସଫଳ ହୋଇଛି ।

ସୁଦର୍ଶନ ନିଜେ ବାଛି ନେଇଥିଲା ସାନ ସାହୁକାର ଭୂମିକାକୁ । ଏଥିରେ ସେ ନିଜକୁ ଜଣେ ଦକ୍ଷ କଳାକାର ଭାବେ ପ୍ରତିଷ୍ଠିତ କଲା । ପ୍ରଥମଥର ପାଇଁ ମଞ୍ଚରେ ପ୍ରବେଶ କଲା ପୂର୍ଣ୍ଣ ନିଧି ଭୂମିକାରେ । ଏଇଠାରୁ ବଂଚିଥିବା ପର୍ଯ୍ୟନ୍ତ ସେ ଥିଲା ମୋର ଡାହାଣ ହାତ । ଛାଇ ଭଳି ମୋ ସାଥିରେ ଥାଏ ।

ମାତ୍ର ବାଇଶି ବର୍ଷ ବୟସରେ ପୂର୍ଣ୍ଣ ଚାଲିଗଲା- ମୋର ଡାହାଣ ହାତ କଟିଗଲା ।

କାଶୀ ଭାଇ ମୂଳିଆରେ ଓକିଲ ପାର୍ଟ ନେଇଥିଲେ । ଏଥିରେ ନେଲେ ଜଜ୍ ପାର୍ଟ-ଗାନ୍ଧିଜୀଙ୍କ କଳ୍ପିତ ରାମରାଜ୍ୟର ପ୍ରବକ୍ତା ଭାବେ । ସାହୁକାର ଭୂମିକାରେ ଥିଲେ ଭ୍ରମର ଭାଇ। ଭାଲୁ ଭାଇ, ରବି ଭାଇ, ନିତ୍ୟାନନ୍ଦ ତ ସବୁଥିରେ ମୁଖ୍ୟ ଭୂମିକାରେ ଅଭିନୟ କରନ୍ତି । ଏଥିରେ ବି ସେଇ ଦାୟିତ୍ୱ ତୁଲାଇଲେ । ଜ୍ଞାନ ସାନ ଭରତ ଭୂମିକାରେ ମଞ୍ଚରେ ପାଦ ଦେଲା । ପୂର୍ବରୁ ବିକି 'ଜାନକୀ'ରେ କୁଶ ଭୂମିକାରେ ପ୍ରଥମ ଅଭିନୟ କରିଥିଲା । ଉଭୟେ ଆମ ଠାରୁ ବୟସରେ ସାନ କିନ୍ତୁ କ୍ରମେ ସାଂଗଠନିକ ନିଷ୍ପତ୍ତିରେ ଗୁରୁତ୍ୱପୂର୍ଣ୍ଣ ଯୋଗଦାନ ଦେବାକୁ ଲାଗିଲେ ।

ନାଟକ ଶେଷ ହେବାକୁ ଗୋଟିଏ ସିନ୍ ବାକି ଅଛି ମୋତେ ଭାଷଣ ଦେବାକୁ କୟି ଭାଇ, ଭଗି ଭାଇ ଷ୍ଟେଜ୍ ଉପରକୁ ଠେଲି ଦେଲେ । ଅଧିକାରୀ ସୁଲଭ ଭାଷଣ ହେବ ପରା । ଅଭିନୟକୁ ଡରି ଆଜି ଯାଏଁ ଷ୍ଟେଜ୍‌ରେ ମୁହଁ ଦେଖାଇ ପାରୁ ନଥିଲି । ଏବେ ଦର୍ଶକଙ୍କ ଆଗକୁ ଯିବାକୁ ହେଲା । ଅବଶ୍ୟ ହାଇସ୍କୁଲରେ ପଢ଼ିବାବେଳେ ଡର ଛାଡ଼ି ଯାଇଥିଲା । ସ୍କୁଲ ଏବଂ ହଷ୍ଟେଲର ବିଭିନ୍ନ ସଭାରେ ଭାଷଣ ଦେଉଥିଲି । ସୀମା ଆନ୍ଦୋଳନ ବେଳେ ପୁରୁଣା ଭୁବନେଶ୍ୱର ଥାନା ଆଗରେ ଗୋଟିଏ ବିରାଟ ସାଧାରଣ

ସଭା ହୋଇଥିଲା। ପ୍ରାତଃ ସ୍ମରଣୀୟ ଗୋଦାବରୀଶ ମିଶ୍ର ଏଥିରେ ସଭାପତିତ୍ୱ କରୁଥିଲେ। ଛାତ୍ର ପ୍ରତିନିଧି ଭାବରେ ମଧ୍ୟ ମୁଁ ଏ ସଭାକୁ ସମ୍ବୋଧିତ କରିଥିଲି। ଆଉ ଡର ନ ଥିଲା। ଷ୍ଟେଜ୍‌ରେ ମୁହଁ ଦେଖାଇଲି। ଭାଷଣଟି ଦେଲି। ତା ପରଠାରୁ ଏ ଦାୟିତ୍ୱଟି ମୋ ଉପରେ ପଡ଼ିଲା।

ଯୌତୁକରେ ସଂଗ୍ରାମ ଚରିତ୍ରଟି ଥିଲା ଗୋଟିଏ ବିପ୍ଳବୀ ସମାଜ ସଂସ୍କାରକର ଚରିତ୍ର। ତାକୁ ଅତି ସୁନ୍ଦର ଭାବେ ରୂପାୟିତ କରିଥିଲା ସୁଦର୍ଶନ। ଦର୍ଶକମାନଙ୍କର ଉଚ୍ଛ୍ୱସିତ ପ୍ରଶଂସା, ସମ୍ବର୍ଦ୍ଧନା ତା'ର ଅଭିନେତା ଜୀବନକୁ ପୁଷ୍ଟିତ କରିଥିଲା। ଆଦ୍ୟ କୈଶୋରର ସ୍ମୃତି ଲିଭି ନଥିଲା। ୧୯୭୫ ମସିହାରେ ଯେତେବେଳେ ଲକ୍ଷ୍ମୀସାଗର ହାଇସ୍କୁଲ ପକ୍ଷରୁ ରବୀନ୍ଦ୍ର ମଣ୍ଡପରେ ଯୌତୁକ ନାଟକ ଅଭିନୀତ ହେଲା ସେତେବେଳେ ମଧ୍ୟ ଏଇ ସଂଗ୍ରାମ ଭୂମିକାରେ ସେ ଅବତୀର୍ଣ୍ଣ ହୋଇଥିଲା। ପରବର୍ତ୍ତୀ ସମୟରେ ସଉତୁଣୀ ଚଳଚ୍ଚିତ୍ରରେ ଅଭିନୟ କରିଥିଲା। ପୁଣି 'ମେଘମୁକ୍ତି' ଚଳଚ୍ଚିତ୍ରରେ ସହ ନିର୍ଦ୍ଦେଶକର ଦାୟିତ୍ୱ ନେଇଥିଲା।

ସେଦିନ ଆମ ଗାଁ ମି.ଇ. ସ୍କୁଲର ପୁରାତନ ଛାତ୍ର ସଂଘର ସମ୍ମିଳନୀରେ ଉଦ୍‌ବୋଧନ ଦେଇ ସୁଦର୍ଶନ ଏଇ କଥା କହୁଥିଲା। ପୁଣି କହୁଥିଲା- "ଏଇ ମାଟି ପାଣିରେ ମୋ ଅଭିନେତା ଜୀବନ ଅଙ୍କୁରିତ ହୋଇଛି-ପଲ୍ଲବିତ ହୋଇଛି। ଏ ମାଟିକୁ ମୁଁ ଭୁଲିପାରିବି ନାହିଁ।"

ଭାଇ ଭାଉକ ନାଟକର ସଫଳତା ଦେଖି ଭଗି ଭାଇ ଏହାକୁ ଯାଗୁଆରେ ମଂଚସ୍ଥ କଲେ ପରବର୍ଷ ରଜ ବେଳକୁ। ସେ ନିର୍ଦ୍ଦେଶନା ଦେଲେ-କଳ୍ ଭୂମିକାରେ ଅଭିନୟ କଲେ। ରଜ ଆଠ ଦିନ ଥାଏ- ଆମର ରିହର୍ସଲ ଚାଲୁଥାଏ; ଯାଗୁଆରେ ନାଟକ ମଂଚସ୍ଥ ହେଲା। ଆମେ ସବୁ ସେଇ ରହିର୍ସଲ ଘରୁ ବାହାରିଲୁ ନାଟକ ଦେଖି। ମୁଁ ଆଉ ଘରକୁ ଆସି ସାର୍ଟ ନେବି କ'ଣ- ଚିତ୍ତର ଗୋଟିଏ ସାର୍ଟ ପିନ୍ଧି ଚାଲିଗଲି। ତା ସାର୍ଟ ଅପେକ୍ଷା ମୋ ଏକୋଇଣିଆ ଗଞ୍ଜିଟି ବଡ଼ ହେବ ପରା। ଯାଗୁଆରେ ପହଞ୍ଚି ଜାଣିଲି ମୋର ଦୁରବସ୍ଥା। ସେଇ ଗାଁରେ ମୋର ବିଭାଘର ହେବାର ମାସେ ପୂରି ନାହିଁ। ଶଳା ଶାଳୀ ମାନେ ଷ୍ଟେଜ୍ ଭିତରେ ବାହାରେ ଖୁନ୍ଦି ହୋଇଛନ୍ତି। ଖୁବ୍ ଲାଜ ଲାଗିଲା। ଷ୍ଟେଜ୍ ଭିତରେ ଆଡ଼େଇ ତାଡ଼େଇ ହୋଇ ରହିଲି। ନାଟକ ସରିବା ମାତ୍ରେ ସାଇକଲ ଧରି ଆସି ଗାଁରେ ହାଜର।

ରାମଚନ୍ଦ୍ର ମିଶ୍ର ଏବଂ କାଳୀଚରଣ ପଟ୍ଟନାୟକଙ୍କ ପରମ୍ପରାର ଆଉ ଜଣେ ବଳିଷ୍ଠ ନାଟ୍ୟକାର ଥିଲେ ଭଂଜ କିଶୋର ପଟ୍ଟନାୟକ।

ଗୋଟିଏ ପୀଢ଼ିର ଅଭିଜ୍ଞତା ପରବର୍ତ୍ତୀ ପୀଢ଼ିକୁ ଦିଗ୍‌ଦର୍ଶନ ଦେଇଛି। ଗୋଟିଏ ପୀଢ଼ିର ଦୋଷ ଦୁର୍ବଳତା ଅନ୍ୟ ପୀଢ଼ିରେ ସଂଶୋଧିତ ହୋଇଛି-ଏହାହିଁ ସଭ୍ୟତାର

ବିକାଶ ପଥରେ ଏକମାତ୍ର କାହାଣୀ। ଭଂଜକିଶୋରଙ୍କ ରଚନାବଳୀ ଏହି ସତ୍ୟକୁ ପରିପୁଷ୍ଟ କରିଛି। କାଳୀଚରଣଙ୍କ କଳ୍ପନା ବିଳସିତା ଏବଂ ରାମଚନ୍ଦ୍ର ମିଶ୍ରଙ୍କର ପ୍ରଚାରଧର୍ମୀତାକୁ ପରିହାର କରି ବିଶ୍ୱାସଯୋଗ୍ୟ କାହାଣୀ ସୃଷ୍ଟି କରିଛନ୍ତି ଭଂଜ କିଶୋର ପଟ୍ଟନାୟକ। ଓଡ଼ିଆ ନାଟକକୁ ଦିଗ୍‌ଦର୍ଶନ ଦେଇଛନ୍ତି ସେ।

ଗାଁ ଗହଳିର ସମସ୍ୟା, ପଲ୍ଲୀ ଜୀବନର ମାର୍ମିକ ଆଲେଖ୍ୟ, ମୂଲିଆ ଓ ଭାଇ ଭାଉଜକୁ ଆମ ମଂଚରେ ଅଭୂତପୂର୍ବ ସଫଳତା ଦେଇଥିଲା। ଆମ ଦର୍ଶକମାନେ ମହୀ ଆଉ ନନ୍ଦ ପରିବର୍ତ୍ତେ ନିଜକୁ ହିଁ ମଂଚ ଉପରେ ଦେଖିଥିଲେ- ତାଙ୍କରି ଭଳି ସାଧାସିଧା, ସ୍ନେହୀ। ଏଇ ପୃଷ୍ଠଭୂମି ଉପରେ ବୈରାଗୀର ସଂସାର ଆମ ଦୃଷ୍ଟି ଆକର୍ଷଣ କଲା।

ଯୌଥ ପରିବାର ପ୍ରତି ଅନୁରାଗ ବିରାଗର ସଂଘର୍ଷରେ ଝଙ୍କୃତ ଗାଁ ଗହଳିର ନିଛକ କାହାଣୀଟିଏ ରୂପାୟିତ ହୋଇଛି ନାଟକରେ।

ସାନଭାଇ ବିଭୁତି, ଭଉଣୀ କେମା, ବୁଢ଼ାବାପ, ପୁଅ ବୁଲା ଏବଂ ସ୍ତ୍ରୀକୁ ନେଇ ବୈରାଗୀର ସୁଖୀ ସଂସାର। ଛାତିରେ ହାତ ପିଟି ବୈରାଗୀ କହି ବୁଲୁଥିଲା- 'ଏଇଟା ବୈରାଗୀର ସଂସାର। ଏମିତି ଗୋଟାଏ ସଂସାର ଏ ଦଣ ଖଣ୍ଡି ଗାଁରେ ବାହାର କରିଦେଲ ଦେଖିବା।' ଯୌଥ ପରିବାରର ସ୍ୱର୍ଣ୍ଣକାତର ଅଂଗଟିକୁ କିନ୍ତୁ ବୁଲାବୋଉ ଚିହ୍ନିଥିଲେ। ତା ଉପରେ ପ୍ରହାର କରୁଥିଲେ ଦିନ ରାତି- "ଗୋଟାଏ ଭେଣ୍ଡିଆ ଭାଇ କାମା ଯୋଡ଼ ହୋଇ ଗାଁ ଟୋକାଙ୍କୁ ଏକାଠି କରି ୟାକୁ ମାର ତାକୁ ଧର, ଏମିତି କରୁଥାଉ ଆଉ ତମେ (ବୈରାଗୀ) ବଳଦ ପରି ଖଟୁଥାଅ।" ବୁଲାବୋଉ ଥକି ପଡ଼ିଲେ 'ସୀତାରାମ' ଦମ୍ଭ ଦେଉଥିଲେ-ସାହସ ଦେଉଥିଲେ-ବାଟ ବତେଇ ଦେଉଥିଲେ।

ଏଇ ସାମାନ୍ୟ ଆଘାତରେ ଏତେବଡ଼ ଘରଟା ଭୁଷୁଡ଼ି ପଡ଼ିବ ବୋଲି କିଏ ଜାଣିଥିଲା ?

ବୁଢ଼ା ବାପ ବଂଚିଛି, ଭଉଣୀଟି ବିଭା ହୋଇ ନାହିଁ ତଥାପି ଦି ଭାଇଙ୍କ ଭିତରେ ଭାଗ ବଣ୍ଟା ହେଲା।

ସେଦିନ ଜମିବାଡ଼ି, କଂସାବାସନ ସବୁ ବୁଲା ହାତରେ ଟେକି ଦେଇ ବିଭୁତି ଯେତେବେଳେ ବାପ ଭଉଣୀକୁ ନେଇ ଘର ଛାଡ଼ି ବାହାରିଗଲା ସୃଷ୍ଟିର ସାର୍ଥକତାରେ ବିସ୍ମିତ, ବିମୁଗ୍ଧ ସ୍ରଷ୍ଟା କହି ଉଠିଥିଲା- "ତୋ ଭଳି ପୁଅ ଜନ୍ମ କରି ମୁଁ ଧନ୍ୟ ହୋଇଗଲିରେ ଧନ୍ୟ ହୋଇଗଲି। ସଂସାରରେ ନେଇକି କେହି ବଡ଼ ହୋଇ ନାହିଁ- ବଡ଼ ହୋଇଛନ୍ତି ଦେଇକି।"

ମାନବୀୟ ଦୁର୍ବଳତା ଉପରେ ଚେତନାର ବିଜୟ ସାଧାରଣ ମଣିଷକୁ କରେ ଅସାଧାରଣ। ସେ ହୁଏ କାହାଣୀର ନାୟକ-ଇତିହାସର ପ୍ରବାଦ ପୁରୁଷ। ସେ

'ବରକୁ' ହୋଇପାରେ ବା ଗୋର୍କିଙ୍କର 'ମା' ହୋଇପାରେ। ହୋଇବି ପାରେ ବୈରାଗୀ ସଂସାରରେ ବିଭୁତି।

'ଆପେ ଭଲ ହେଲେ ଦୁନିଆଁ ଭଲ।' ବିଭୁତି ଥିଲା ଭଲ ମଣିଷଟିଏ। ନିଃସ୍ୱାର୍ଥପର, ସମ୍ବେଦନଶୀଳ, ସ୍ୱାଭିମାନୀ। ସେଥିପାଇଁ ବାସ୍ତୁହରା ବିଭୁତିକୁ ଆଶ୍ରୟ ଦେଇଥିଲେ ଜଣେ ଶିଳ୍ପପତି। ନିଜ ସଂସ୍ଥାରେ ତା ପାଇଁ ଚାକିରିଟିଏ ଖଞ୍ଜି ଦେଇଥିଲେ। ସେଇ ଭଲ ପଣିଆଁ ପାଇଁ ଶିଳ୍ପପତିର ଅଲିଅଳୀ ଝିଅଟି ଭଲ ପାଇ ବସିଥିଲା ବିଭୁତିକୁ।

ଏଣେ କିନ୍ତୁ ସୀତାରାମର ଚକ୍ରାନ୍ତରେ ବୈରାଗୀର ସଂସାର ଭୁଷୁଡ଼ି ପଡୁଥିଲା। ଯାହା କହନ୍ତି ଭଙ୍ଗା ଘରେ ଭୁତ ରାଜା। ବୈରାଗୀ ଘରେ ସୀତାରାମ ରାଜୁତି କରୁଥିଲେ।

ବିଚରା ବୁଲା !

କଅଁଳିଆ ମନଟି ତାର ଖୋଜି ବୁଲୁଥିଲା ଦାଦାକୁ। ଖୋଜି ଖୋଜି ଦିନେ ବିଛଣା ଧରିଲା। ମନର ରୋଗକୁ କ'ଣ ଔଷଧ ଅଛି ? ମନେହେଲା ବୁଲା ଆଉ ବିଛଣାରୁ ଉଠିବ ନାହିଁ। ବୁଲାକୁ ବିଭୁତି କୋଳେଇଛି, କାଖେଇଛି ତାର ଅଳି ଅର୍ଦଳି ସହିଛି। ତା ମୁହଁରେ ହସ ଟିକିଏ ଦେଖିବାକୁ ଘୋଡ଼ା ହୋଇଛି, ଗୀତ ଗାଇଛି, ନାଚିଛି, ଭଳି ଭଳି କଣ୍ଢେଇ କିଣି ଆଣିଛି ଯାତ୍ରାରୁ। ଆଜି ସେ ରୋଗଶଯ୍ୟାରେ। ବିଭୁତିର ସବୁ ଅଭିମାନ ପାଣିଫୋଟକା ଭଳି ମିଳାଇ ଯାଇଛି। ଉଦ୍‌ଗତ ଆବେଗରେ ଧାଇଁ ଆସିଛି ବୁଲା ପାଖକୁ।

ରୋଗଟା ବଡ଼ ନିର୍ଦ୍ଦୟ। ଦାଦା ତା'ର ଫେରିଆସିଛି, ବୁଲାକୁ କୋଳେଇବ, କାଖେଇବ ହସେଇବ ବୋଲି। ବୁଲା ଆଖି ଖୋଲୁ ନାହିଁ।

ସବୁଚେଷ୍ଟା ଯେତେବେଳେ ବିଫଳ ହୁଏ ସେତେବେଳେ ଅନ୍ତରାତ୍ମାରୁ ଇଙ୍ଗିତ ମିଳେ। କାହିଁକି ମିଳେ ବୁଝିହୁଏ ନାହିଁ କି ବୁଝାଇ ହୁଏ ନାହିଁ। ସେଇଭଳି ଗୋଟିଏ ଇଙ୍ଗିତ ମିଳିଗଲା ଅବା ! ନିଇତି ବିଭୁତି ଗୀତଟିଏ ବୋଲେ ବୁଲା ପାଇଁ। ଏ ଗୀତରେ କି ମୋହିନୀ ଶକ୍ତିଥାଏ କେଜାଣି ବୁଲା ଆଖିରେ ବିଜୁଳି ଚମକି ଯାଏ। କେଜାଣି ଅବା ଗୀତଟି ଗାଇଲେ ବୁଲା ଆଖି ଖୋଲିବ। ବିଜୁଳିର ଚମକ ଖେଳିବ ତା'ର ନିଷ୍ପ୍ରଭ ଡୋଳାରେ। ସତକୁ ସତ ଗୀତର ଯାଦୁକରୀ ସ୍ପର୍ଶରେ ବୁଲାର ଆଖି ଖୋଲିଛି।

ଏଇଠୁ ପୁଣି ଆରମ୍ଭ ହୋଇଛି ସେ ସୁଖୀ ସଂସାରର ନିତିଦିନିଆ କାହାଣୀ- ପରସ୍ପର ପ୍ରତି ସ୍ନେହ, ଶ୍ରଦ୍ଧା ଓ ଅନୁରାଗର ବୃତ୍ତାନ୍ତ। ଏଇ ସ୍ନେହଶ୍ରଦ୍ଧା ହିଁ ଯୌଥ ପରିବାରର ଅବିଚ୍ଛେଦ୍ୟ ବନ୍ଧନ। ବୁଲା ତା'ର ଏକ ପ୍ରତୀକ ମାତ୍ର। ବୈରାଗୀର ସଂସାର ନାଟ୍ୟକାରଙ୍କର ସାମାଜିକ ଚେତନାର ଏକ ପୁଷ୍କଳ ପ୍ରତିଫଳନ।

ମୁଁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ସାଂସ୍କୃତିକ ସଂସଦର ସଭାପତି ଥିବା ସମୟରେ ଗୋଟିଏ ଭଲ ବହି ନିର୍ବାଚିତ କରିବାକୁ ବଂଧୁମାନେ ଅନୁରୋଧ କଲେ। ମୁଁ ଏଇ ବହିଟିକୁ ମନୋନୀତ କରିଥିଲି। ଏହା ୧୯୯୫ ମସିହାର କଥା। ସେତେବେଳକୁ ଏ ନାଟକ ରଚିତ ହେବାର ୪୩ ବର୍ଷ ଅତୀତ ହେଲାଣି। ତଥାପି ଦେଖିଲି ନାଟକର ଆବେଦନ କ୍ଷୁଣ୍ଣ ହୋଇନାହିଁ।

୧୯୫୬ ଅକ୍ଟୋବର ମାସରେ ଅନ୍ନପୂର୍ଣ୍ଣା ଏ ଗ୍ରୁପରେ ଲକ୍ଷହୀରା ନାଟକ ଅଭିନୀତ ହେଲା। ସାରା ପୁରୀ ସହରଟି ଯେପରି ଚହଲି ଉଠିଲା। ନାଟକର ପ୍ରଶଂସା ସବୁରି ତୁଣ୍ଡରେ। ଗାଁ ଗହଳିରୁ ଲୋକେ ଶଗଡ଼ ଧରି ଆସିଲେ ନାଟକ ଦେଖିବାକୁ।

ଅନେକ ଆଗରୁ ପୌରାଣିକ ନାଟକର ଦିନ ଶେଷ ହୋଇଯାଇଥିଲା। ପୁଣି କିପରି ଲକ୍ଷହୀରା ଜନ ମାନସକୁ ପ୍ରଭାବିତ କଲା ବୁଝି ହେଲା ନାହିଁ। ଚିତ୍ତ ଏବଂ ରବିଭାଇଙ୍କୁ ସାଥିରେ ନେଇ ନାଟକ ଦେଖିଲି। ସାମାଜିକ ବ୍ୟଭିଚାର ବିରୁଦ୍ଧରେ କୁଳବଧୂ ରାଧାର ନୀରବ ବିଦ୍ରୋହ ରୂପାୟିତ ହୋଇଥିଲା ନାଟକରେ।

ରାଧା ଯେଉଁଦିନ ଶାଶୂଘରୁ ଗୋଡ଼ କାଢ଼ିଲା ସେ ଜାଣି ନଥିଲା ଯେ ତା ମୁଣ୍ଡ ଉପରେ ଆକାଶ ଛିଡ଼ି ପଡ଼ିବ। ଶାଶୁର ଅହେତୁକ ଅଦଉତି, ସ୍ୱାମୀର ଉଦାସୀନତାରେ ଜଳିପୋଡ଼ି ଛଟପଟ ହେଉଥିବା ଏଇ କୁଳବଧୂଟି ଦିନେ କ୍ଷଣିକ ଆବେଗରେ ସ୍ୱାମୀର ବଂଧୁ ବିଷ୍ଣୁ ସାଥିରେ ପଳାଇଥିଲା ବାପଘରକୁ, ଟିକିଏ ଶାନ୍ତି ପାଇଁ-କଣିକାଏ ସହାନୁଭୂତି ପାଇଁ।

ସମାଜର ବିଚାର କିନ୍ତୁ ବିଚିତ୍ର।

- ଏରୁଣ୍ଡି ଡେଇଁ ନାହିଁ; ବାପା ଫେରାଇ ଦେଲେ।

- ଶାଶୁ କହିଲେ- 'ପର ପୁରୁଷର ହାତ ଧରି ଯୋଉ ମାଇପି, ରାତିରେ ଘରୁ ଗୋଡ଼ କାଢ଼ି ଚାଲିଯାଏ ତା'ର ପୁଣି ଗୋଟାଏ ଟାଣ-ତା'ର ପୁଣି ସତୀ ପଣିଆଁ। ଏ ଘରେ ତୋର ଥାନ ନାହିଁ। ଆଜିଠୁ ଆଉ ତୁ କୁଳ ଭୁଆଷୁଣୀ ନୋହୁଁ-କୁଳଟା।'

- ସ୍ୱାମୀ ମା'କୁ ନୀରବରେ ସମର୍ଥନ କଲେ।

- ସମାଜ ପତି କହିଲେ- 'ସମାଜର ନିଷ୍ପତ୍ତିରେ ତୁ ପତିତା।'

ତ୍ରସ୍ତା ହରିଣୀଟି ଆସନ୍ନ ମୃତ୍ୟୁ ମୁହଁରୁ ରକ୍ଷା ପାଇବା ପାଇଁ ବାଟ ଖୋଜୁଥିଲା ସତେ !

ଉତ୍ପୀଡ଼ନର ଏକୁଟିଆ ଶାଳରୁ ବିଦ୍ରୋହର କୁଆଁରଡ଼ି ଶୁଭିଲା। ସେଇଠି, ସେଇ ମୁହୂର୍ତ୍ତରେ ଶପଥ ନେଲା ରାଧା-ଯେଉଁ ପୁରୁଷ ସମାଜ ନାରୀ ମୁଣ୍ଡରୁ ଓଢ଼ଣା ଖୋଲି ଦାଣ୍ଡରେ ଠିଆ କରାଇଛି ସେଇ ପୁରୁଷ ସମାଜକୁ ତାର ଅନୁକମ୍ପାର ଭିକାରି କରିବ।

ସମାଜ ବିରୁଦ୍ଧରେ ଯେଉଁମାନେ ବିଦ୍ରୋହ କରନ୍ତି ସେମାନଙ୍କର ବାଟ ଅଲଗା। ସେଇଭଳି ଅମଡ଼ା ବାଟଟିଏ ବାଛି ନେଇଛି ରାଧା। ନାରୀତ୍ୱକୁ ବିସର୍ଜନ ନ ଦେଇ, ଦେହଜ କାମନାକୁ ପ୍ରଶୟ ନ ଦେଇ ନିଜ ପାଇଁ ନୂତନ ପରିଚୟ ସୃଷ୍ଟି କରିଛି ସେ। ଗୋଟିଏ ରାତ୍ରିର ସାହଚର୍ଯ୍ୟ ପାଇଁ ମୂଲ୍ୟ ତା'ର ଏକ ଲକ୍ଷ ହୀରା। ଆକାଶର ଚାନ୍ଦକୁ ଦୂର ପାହାଡ଼କୁ ଯେପରି ଛୁଇଁବାର ପିପାସା ନ ଥାଏ ଅଥଚ ବାରମ୍ବାର ଦେଖିବାର ମୋହ ଜାଗେ ସେହିପରି ଲକ୍ଷହୀରାର ରୂପଶ୍ରୀର ଦୁର୍ବାର ଆକର୍ଷଣରେ ଲକ୍ଷହୀରାର ଦ୍ୱାରସ୍ଥ ହୋଇଛନ୍ତି ସମାଜପତି, ଶ୍ରେଷ୍ଠୀ, ନଗରର ସଂଭ୍ରାନ୍ତ ନାଗରିକ ଗଣ।

ନାରୀର ଅସହାୟତା ବିରୁଦ୍ଧରେ ଜଣେ ଅସହାୟ୍ ନାରୀର ସଂଘର୍ଷ ବିଶ୍ୱାସର ଲକ୍ଷେ ଦୀପାଳୀ ଜାଳିଛି-ନବ ପ୍ରଭାତର ଆବାହନୀ ଗାଇଛି-ରୁଗ୍‌ଣ ସମାଜ ବ୍ୟବସ୍ଥା ପ୍ରତି ଆହ୍ୱାନ ସୃଷ୍ଟି କରିଛି।

କେଇଟିଦିନ ପରେ-

ବିଳମ୍ବରେ ଲକ୍ଷହୀରା ସ୍ନାନ ସାରି ଫେରୁଛି। ଯୌବନ, ଓଦା ସର ସର ଲୁଗା ଆଡୁଆଳରେ ଦୋଳି ଖେଳୁଛି। କୁଷ୍ଠରୋଗାକ୍ରାନ୍ତ ଭିକାରିଟିର ଦୃଷ୍ଟି ଲାଖି ରହିଛି ଲକ୍ଷହୀରାର କମନୀୟ ତନୁ ବଲ୍ଲରୀ ଉପରେ। ତାର ତନୁଶ୍ରୀକୁ ସ୍ପର୍ଶ କରିବାର ବିକଟ ପିପାସା ତାକୁ ଅସ୍ଥିର କରିଛି।

ଲକ୍ଷହୀରା ସାଧାରଣ ଗଣିକା ନୁହେଁ। ଭିକାରିଟିଏ କେଉଁଠୁ ପାଇବ ଲକ୍ଷେ ହୀରା ? ପତ୍ନୀ ଅନସୂୟା ହତାଶ ହୋଇନି। ସ୍ତ୍ରୀର ପବିତ୍ର କର୍ତ୍ତବ୍ୟ ଭାବି ଲକ୍ଷେ ହୀରା ସଂଗ୍ରହ ପାଇଁ ଅଜଣା, ଅଶୁଣା ବାଟରେ ପାଦ ଦେଇଛି। ଆକସ୍ମିକତାକୁ ବିଧି ନିର୍ଦ୍ଦେଶ ବୋଲି ମାନିନେଇ ଯୋଉଦିନଠାରୁ ଅନସୂୟା କୁଷ୍ଠରୋଗାକ୍ରାନ୍ତ ଏଇ ଭିକାରିଟିର ହାତ ଧରିଛି ସେଇଦିନଠାରୁ ସ୍ୱାମୀ ମୁହଁରେ ହସ ଫୁଟାଇବାକୁ ନିଜକୁ ଅଜାଡ଼ି ଦେଇଛି।

ସେ ମଧ୍ୟ ଏକ ମାର୍ମିକ କାହାଣୀ। ଅନସୂୟାର ସ୍ୱୟଂବର ଉପଲକ୍ଷେ ଦେବାର୍ଚ୍ଚନ ସାରି ଫେରୁଛନ୍ତି ରାଜା, ରାଣୀ, ନିଜେ ରାଜକନ୍ୟା ଅନସୂୟା। ଅନ୍ନ ବସ୍ତ୍ର ଦାନ କରୁଛନ୍ତି। ଶେଷରେ ଠିଆ ହୋଇଛି ଭିକାରିଟିଏ ଆଶାୟୀ ଆଖିରେ। ଦେବା ପାଇଁ ରାଜକନ୍ୟା ଅନସୂୟାର ହାତରେ ଆଉ କିଛି ନାହିଁ। ଅଛି ଗୋଟିଏ ଫୁଲହାର। ସେଇଟିକୁ ଭିକାରିକୁ ଦେବାବେଳେ ଜାଣି ନାହିଁ ଏଇ ହେଉଛି ଶିବ ଅଙ୍ଗଲାଗି ବରମାଲ୍ୟ। ପରମ୍ପରାର ଆମନ୍ତ୍ରଣରେ, ବିଶ୍ୱାସର ଆହ୍ୱାନରେ, ସ୍ୱଇଚ୍ଛାରେ ନିଜକୁ ଉତ୍ସର୍ଗ କରିଛି ଭିକାରିର ପାଦ ତଳେ।

ପାଖରେ ସତୀ ସାଧ୍ୱୀ ସ୍ତ୍ରୀ। ନିଜ ଦେହରେ ଗଳିତ କୁଷ୍ଠ ତଥାପି ଜାନ୍ତବ କାମ ପ୍ରବୃତ୍ତିରୁ ନିବୃତ୍ତ ହୋଇନାହିଁ। ଲକ୍ଷହୀରାର ତନୁଶ୍ରୀ ଦର୍ଶନରେ କାମାଗ୍ନି ଜଳି ଉଠିଛି।

ସତୀତ୍ୱର ସଂଜ୍ଞା କେତେ ବ୍ୟାପକ ଅଥବା କେତେ ସଂକୁଚିତ କେଜାଣି, ଲକ୍ଷେ ହୀରା ବିନିମୟରେ ଜଣେ ପର ପୁରୁଷ ପାଖରେ ନାରୀତ୍ୱକୁ ଗୋଟିଏ ରାତ୍ରି ପାଇଁ ସମର୍ପି ଦେବାକୁ ସ୍ୱାମୀଙ୍କର ଅନୁମତି ନେଇ ଯାଇଛି ଅନସୂୟା। ଅଦେଖା, ଅଶୁଣା ଏ ପତିଭକ୍ତିରେ ବିସ୍ମିତ ପରପୁରୁଷଟି ତାକୁ ମା'ର ଆସନ ଦେଇଛି। ବିଡ଼ମ୍ବନା ପରିବର୍ତ୍ତେ ମିଳିଛି ଭକ୍ତିପୂତ ଶ୍ରଦ୍ଧାଞ୍ଜଳୀ ପୁଣି ସନ୍ତାନର ନୈବେଦ୍ୟ ରୂପେ ଏକ ଲକ୍ଷ ହୀରା। ଅନସୂୟାର ସାଧନା ପୂର୍ଣ୍ଣ ହୋଇଛି। ସ୍ୱାମୀ ତାର ଆଜି ଲକ୍ଷହୀରାର ବିଳାସ କକ୍ଷରେ। ଲକ୍ଷହୀରାକୁ ସ୍ପର୍ଶ କରି ଆଜି ତାଙ୍କ ମୁହଁରେ ହସ ଉକୁଟିବ-ଯେଉଁ ହସ ଟିକକ ଦେଖିବା ପାଇଁ ସେ ନିଜକୁ ଭୁଲିଛି।

ଅତିଥିଙ୍କ କ୍ଷୁଧା ନିବାରଣ ପାଇଁ ପକ୍ଷୀଟିଏ କାଳେ ନିଜେ ନିଆଁ ଜାଳି ସେଇ ଜଳନ୍ତା ନିଆଁରେ ଝାସ ଦେଇଥିଲା। ଉପନିଷଦର ଉପକଥା ଯେ। ଲକ୍ଷହୀରା କକ୍ଷରେ ଆଜି ଅତିଥି ଉପସ୍ଥିତ। ତାଙ୍କର ତୁଷ୍ଟି ପାଇଁ-ଅଭ୍ୟର୍ଥନା ପାଇଁ ଲକ୍ଷହୀରାର ଭବନ ଚଳ ଚଞ୍ଚଳ ହୋଇ ଉଠିଛି। ନିଜେ ଜାଳିଥିବା ନିଆଁରେ ନାରୀତ୍ୱକୁ ଆହୁତି ଦେଇ ଅତିଥି ସତ୍କାର କରିବ ସେ।

ସେଦିନ ଲକ୍ଷହୀରାର ବିଳାସ କକ୍ଷରେ, ବୈଭବର ଔଜ୍ଜ୍ୱଲ୍ୟ ଭିତରେ ବିଷ୍ଣୁ ଦାସ ଚିନା ଲକ୍ଷହୀରାକୁ ଚିହ୍ନିପାରି ନାହିଁ କିନ୍ତୁ ଏଇ ରୋଗ ଗ୍ରସ୍ତ ମଳିନ ବିଷ୍ଣୁ ଦାସକୁ ଚିହ୍ନିବାରେ ତ୍ରୁଟି କରି ନଥିଲା ଲକ୍ଷ ହୀରା। ଏଇ ଦିନେ ଥିଲା ତା'ର ସ୍ୱାମୀର ବଂଧୁ। ଯାହାରି ସହିତ ରାଧା ସେଦିନ ଶାଶୂଘର ଛାଡ଼ିଥିଲା। ସ୍ୱାମୀ, ଶାଶୁ, ବାପାଙ୍କ ଠାରୁ ଦୂରେଇ ଯାଇଥିଲା। ରାଧାର ଅସହାୟତାର ସୁଯୋଗ ନେଇ ପ୍ରେମ ଭିକ୍ଷା କରିଥିଲା ଏଇ ବିଷ୍ଣୁ ଦାସ। ରାଧାର ଅଭିଶାପରେ ସେ ଆଜି କୁଷ୍ଠ ରୋଗାକ୍ରାନ୍ତ। ଉଲ୍ଲଙ୍ଗ କାମନା ପୁଣି ଥରେ ତାକୁ ଲକ୍ଷହୀରାର ଦ୍ୱାରସ୍ଥ କରିଛି।

ଟିକିଏ ଦୂରରେ ପଞ୍ଚ ପ୍ରଦୀପ ଜଳୁଥିଲା। ଲକ୍ଷହୀରାର ପରିଚୟ ପାଇଲା ପରେ ବିଷ୍ଣୁଦାସର ମନେହେଲା ସେଇ ଅଗ୍ନିଶିଖା ସବୁ ଛିଟିକି ଆସି ଯେପରି ତା'ର ଆତ୍ମାକୁ ଦଗ୍ଧ କରୁଛି। ମନରେ ଆଉ କାମନାର କ୍ଷୁଧା ନ ଥିଲା। ଥିଲା କେବଳ ଅନ୍ତହୀନ ତୃଷା। ପାଖରେ ସୁନାଝରିରେ ସୁବାସିତ ପାନୀୟ। ମାଟି ଝରିରେ ନିର୍ମଳ ଗଂଗା ଜଳ। ମାଟି ଝରି ଉଠାଇ ନେଇ ଆକଣ୍ଠ ଜଳପାନ କରିଛି ବିଷ୍ଣୁ ଦାସ। ଲକ୍ଷହୀରା ପଚାରିଛି- "ନିର୍ମଳ ସ୍ୱଚ୍ଛ ପବିତ୍ର ପାଣି ପିଇବାର ଲୋଭ ସମ୍ଭାଳି ନ ପାରି ସୁନାର ପାତ୍ରକୁ ତୁଚ୍ଛ କଲ, କିନ୍ତୁ ହଳାହଳମୟୀ ବାରବିଳାସିନୀର ରୂପରେ ମୁଗ୍ଧ ହୋଇ ଗଙ୍ଗୋଦକ ଠାରୁ ପବିତ୍ର, ନିଜର ପତିବ୍ରତା ସ୍ତ୍ରୀକୁ ଉପେକ୍ଷା କଲ କିପରି ?"

ବିଷ୍ଣୁ ଦାସ ପାଖରେ ଉତ୍ତର ଦେବାକୁ ଭାଷା ନଥିଲା। କିଏ ତା'ର ଛାତି ଚିରି ଦୁଇଫାଳ କରିଦେଲା ଅବା !

ସେଇଠି ସେଇ ବିଳାସ କକ୍ଷରେ ବିଷ୍ଣୁ ଦାସର ପଶୁତ୍ୱ ଯେପରି ବଳି ପଡ଼ିଲା। ରାଧାକୁ ମହାସତୀ ରୂପେ ସମ୍ବୋଧିତ କରି ଭକ୍ତି ନମ୍ର ପ୍ରଣତି ଜଣାଇଲା ବିଷ୍ଣୁ ଦାସ।

ଅନାପେକ୍ଷିକତାର ଆବରଣ ଖୋଲି 'ସତୀତ୍ୱ' ଯେପରି ଆତ୍ମନିଷ୍ଠ ହେବାକୁ ଯାଉଥିଲା।

ସେ ସହରରେ ଆଉ କାହାକୁ ମୁହଁ ଦେଖାଇବାର ସାହସ ବିଷ୍ଣୁ ଦାସ ହରାଇ ବସିଥିଲା। ଦିନେ ରାତିରେ ଅନସୂୟାକୁ ସାଥିରେ ନେଇ ସେ ବାହାରିଛି ଅନିର୍ଦ୍ଦିଷ୍ଟ ପଥରେ।

ଦୁର୍ଭାଗ୍ୟ। ଅନ୍ଧକାର ଭିତରେ ଶୂଳ ଉପରେ ଧ୍ୟାନମଗ୍ନ ସନ୍ୟାସୀଙ୍କୁ ଝୁଣ୍ଟି ପଡ଼ିଛି ଅନସୂୟା। 'ରାତ୍ରି ପ୍ରଭାତ ହେବା ସଙ୍ଗେ ସଙ୍ଗେ ତା'ର ସ୍ୱାମୀ ଚିରନିଦ୍ରାରେ ଶାୟିତ ହେବ' ବୋଲି ଅଭିଶାପ ପାଇଛି ତାଙ୍କଠାରୁ। ଏଇଠୁ ଆରମ୍ଭ ହୋଇଛି ନ ପାହୁ ରାତି ନମରୁ ପତିର ପୌରାଣିକ ଆଖ୍ୟାନଟି। ସତୀ ଅନସୂୟା ବାକ୍ୟରେ ସୂର୍ଯ୍ୟରଥ ଅଟକି ଯାଇଛି। ତିନିଦିନ ବ୍ୟାପୀ ଅନ୍ଧକାର ଛାଇ ଯାଇଛି ସାରା ପୃଥିବୀରେ। ନିରନ୍ଧ୍ର-ନିବିଡ଼ ଅନ୍ଧକାର। ସୃଷ୍ଟି ନାଶ ହେବା ଉପରେ। ନାରାୟଣ ଆସିଛନ୍ତି ଭିକାରି ବେଶରେ ଜଗତ୍‌ବାସୀଙ୍କର ଜୀବନ ଭିକ୍ଷା କରିବାକୁ। ସତୀବାକ୍ୟରେ ସୂର୍ଯ୍ୟୋଦୟ ଘଟିଛି। ନାଟକ ଶେଷରେ ରାଧା ତା'ର ସ୍ୱାମୀ ସହିତ ମିଳିତ ହୋଇଛି। ପୁଣି ବିଷ୍ଣୁ ଦାସ ରୋଗରୁ ମୁକ୍ତି ଲାଭ କରିଛି।

ସମାନ୍ୟ ଅଲୌକିକତା ସତ୍ତ୍ୱେ ନାଟକର ସାମାଜିକ ଆବେଦନ କ୍ଷୁଣ୍ଣ ହୋଇନାହିଁ। କାର୍ତ୍ତିକ କୁମାର ଘୋଷଙ୍କ ଲେଖନୀରେ ପର୍ଯ୍ୟୁଷିତ ସମାଜ ବ୍ୟବସ୍ଥାର ଏକ ନଗ୍ନ ମଳିନ ରୂପ ପ୍ରକାଶ ପାଇଛି ଲକ୍ଷହୀରା ମାଧ୍ୟମରେ। ସେଥିପାଇଁ ନାଟକଟି ସଫଳ ହୋଇଥିଲା ଅନ୍ନପୂର୍ଣ୍ଣା ରଂଗମଂଚରେ।

ରକ ବେଳକୁ ଏହାକୁ ମଞ୍ଚସ୍ଥ କଲୁ। ଅନ୍ନପୂର୍ଣ୍ଣା ରଂଗମଂଚରେ ବହୁ ଆଡ଼ମ୍ବରପୂର୍ଣ୍ଣ ସାଜସଜ୍ଜା ଦେଖି ଆସିଛି। ପଞ୍ଚଦୀପଠାରୁ ସିଂହାସନ ଯାଏ ସବୁ ହାତରେ ତିଆରି କରିବାକୁ ଲାଗି ପଡ଼ିଲି। ଟିକେଟ ବିକ୍ରି କରିବାକୁ ସ୍ଥିର କଲୁ। କବିଚନ୍ଦ୍ରଙ୍କ ଭାଷାରେ 'ଯାହାର ତୂଳୀରୁ ଜୀବନ ଝରେ' ସେଇ କୃଷ୍ଣ ମୁଖର୍ଜୀ ଆସିଲେ ପେଣ୍ଟିଂ କରିବାକୁ।

ଭ୍ରମରଭାଇ ବୟସ୍ୟ ପାର୍ଟ ନେଲେ। ଚିତ୍ତ ନେଲା ରାଜାପାର୍ଟ। ତାକୁ ଡର ମାଡୁଥାଏ। ଭ୍ରମର ଭାଇଙ୍କ ସହିତ ତାକୁ ଅଭିନୟ କରିବାକୁ ପଡ଼ିବ। ବୟସ୍ୟର ପ୍ରତିଟି ସଂଳାପ ହାସ୍ୟୋଦ୍ଦୀପକ। ସେ ହସ ସମ୍ଭାଳି ପାରିବ ତ ? ଷ୍ଟେଜ୍ ଉପରେ ତା ଆଶଙ୍କା ସତ୍ୟରେ ପରିଣତ ହେଲା। ଭଗି ଭାଇ ପାର୍ଟ ନ ନେଲେ ଗରଗର ହେବେ-ମନେମନେ ରକ୍ତଚାଉଳ ଚୋବାଇବେ। ସେ ସନ୍ୟାସୀ ଭୂମିକାରେ ଅଂଶ ଗ୍ରହଣ କଲେ।

ରବିଭାଇ, ନିତ୍ୟାନନ୍ଦ, କେଦାର ମୁଖ୍ୟ ଭୂମିକାରେ ରହିଲେ। ଏଣିକି ଅନ୍ୟାନ୍ୟ ନାଟକରେ କେଦାର ମୁଖ୍ୟ ଭୂମିକାରେ ଅଂଶଗ୍ରହଣ କଲା। ନାଟକଟି ସଫଳ ହେଲା- ହେବ ବୋଲି ଆମ ମନରେ ବିଶ୍ୱାସ ବି ଥିଲା।

ନିତ୍ୟାନନ୍ଦ ଅନ୍ୟାନ୍ୟ ସୌଖୀନ ମଂଚରେ ଅଭିନୟ କରିବାକୁ ଯାଏ। ସେଠାରୁ ସେ କିଛି ଓଡ଼ିଶୀ ନୃତ୍ୟ ଶିକ୍ଷା କଲା। ଆଗରୁ ସେ ପଲ୍ଲୀ ନୃତ୍ୟ କରୁଥିଲା। ନାଟକ ଆରମ୍ଭ ହେବା ପୂର୍ବରୁ ଆମ ମଂଚରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ ପରମ୍ପରାରେ ପରିଣତ ହୋଇ ସାରିଥିଲା। ଭ୍ରମରଭାଇ, ଗୋପାଳମାମୁଁ, ରଜନୀ ଭାଇଙ୍କ କମିକ୍ ସାଥିକୁ ନିତ୍ୟାନନ୍ଦର ପଲ୍ଲୀ ନୃତ୍ୟ, ଓଡ଼ିଶୀ ନୃତ୍ୟ ଦର୍ଶକ ମାନଙ୍କୁ ଅଫୁରନ୍ତ ଆନନ୍ଦ ଦେବାକୁ ଲାଗିଲା। ପରେ ପରେ ଚାରୁ, ପ୍ରମିଳା, ଉଷା ନୃତ୍ୟରେ ଅଂଶ ଗ୍ରହଣ କଲେ। ନିତ୍ୟାନନ୍ଦ ଶିଖାଇଲା। ମୋର ଯେତେଦୂର ମନେହୁଏ ମାଟ୍ରିକ୍ ପାସ୍ କରିବା ପର୍ଯ୍ୟନ୍ତ ସେମାନେ ନୃତ୍ୟ ପ୍ରଦର୍ଶନ କରୁଥିଲେ। ଅନେକ ସମୟରେ ବାହାରୁ ପେଣ୍ଟର୍ ଆସନ୍ତି କିନ୍ତୁ ସେମାନେ ତାଙ୍କ ପାଖରେ ପେଣ୍ଟିଂ ହୁଅନ୍ତି ନାହିଁ। ମୁଁ ପେଣ୍ଟିଂ ନକଲେ ତାଙ୍କ ମନକୁ ପାଏ ନାହିଁ।

ସେ ବର୍ଷ ଆମେ ଚନ୍ଦ୍ରଭାନୁ ନାଟକ ମଂଚସ୍ଥ କରିବାକୁ ଯାଉଥାଉ। ବିଶିଷ୍ଟ ନାଟ୍ୟକାର ଆନନ୍ଦ ଶଙ୍କରଙ୍କର ଏହା ଗୋଟିଏ ବ୍ୟଥା ଭରା କାହାଣୀର ନାଟ୍ୟରୂପ। ଚନ୍ଦ୍ରର ମାତୃହରା ସନ୍ତାନ ପାଇଁ ଭାନୁ ଯେଉଁ ତ୍ୟାଗ ସ୍ୱୀକାର କରିଛି ତା'ର ଏକ ଜୀବନ୍ତ ଚିତ୍ର ଏଥିରେ ଉପସ୍ଥାପିତ ହୋଇଛି। ଏ ନାଟକଟିକୁ ସୁନ୍ଦର ଭାବେ ଉପସ୍ଥାପିତ କରିବାକୁ ଆମେ ମନ ପ୍ରାଣ ଢାଳି ଦେଇଥାଉ। ରଜ ଆଉ ୪/୫ ଦିନ ଅଛି ବିଜି ଗୋଟିଏ ପରୀକ୍ଷାରେ ଅସଫଳ ହେଲା। ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ତାକୁ ପ୍ରସ୍ତୁତ ହେବାକୁ ପଡ଼ିବ। ତାକୁ ଅବ୍ୟାହତି ଦେଲୁ, ତା ଭୂମିକାଟି ତୁଲାଇବାକୁ ନିତ୍ୟାନନ୍ଦକୁ ଅନୁରୋଧ କଲୁ। ବହୁ କଷ୍ଟରେ ସେ ରାଜି ହେଲା। ରଜ ପୂର୍ବଦିନ ବିଜି ପୁଣି ତା'ର ମତ ବଦଳାଇଲା। ପାର୍ଟ କରିବାକୁ ଆମକୁ ଫୁସୁଲେଇଲା। ଆମେ ଦେଖିଲୁ ସେ ପନ୍ଦରଦିନ ପର୍ଯ୍ୟନ୍ତ ରିହର୍ସଲ କରିଛି। ନିତ୍ୟାନନ୍ଦ ମାତ୍ର ଦୁଇଦିନ। ତେଣୁ ବିଜି କଥା ରଖିଲୁ। ନିତ୍ୟାନନ୍ଦକୁ ବଦଳାଇ ବିଜିକୁ ସେ ପାର୍ଟ ଦେଲୁ।

ପହିଲି ରଜ ଦିନ ଆମେ ପେଣ୍ଡାଲ ବାନ୍ଧୁଛୁ, ଭ୍ରମର ଭାଇ ଆସିଲେ। କିଛି ସମୟ ମେଳନ ତୋଟା ଖୁଣ୍ଟି ଉପରେ ବସିଲେ। ତାପରେ ମୋତେ ଡାକି କହିଲେ- "ନିତ୍ୟାନନ୍ଦକୁ ବଦଳାଇ ଠିକ୍ କାମ କଲ ନାହିଁ। ତୁମଠାରୁ ଏହା ଆଶା କରାଯାଏ ନାହିଁ।" ଠିକ୍‌କୁ ଠିକ୍ ଏବଂ ଭୁଲ୍‌କୁ ଭୁଲ୍ କହିବାରେ ସେ କେବେ ପଛାନ୍ତି ନାହିଁ। ତାପରେ ସେ ଆମକୁ ପିଠି କରି ଚାଲିଗଲେ। ରୁକୁଣା ରଥ ଅଣନେଉଟା। ସେଇଦିନଠାରୁ ସେ କିମ୍ବା ନିତ୍ୟାନନ୍ଦ ଆଉ ଆମ ମଂଚକୁ ଫେରି ଚାହିଁ ନାହାନ୍ତି।

ପରବର୍ତ୍ତୀ ବର୍ଷ ମାନଙ୍କରେ ଅନୁରୋଧ କରିଛି କିନ୍ତୁ ଫଳ କିଛି ଫଳି ନାହିଁ। ଏବେ ବି ମୁଁ ଏଥିପାଇଁ ନିଜକୁ କ୍ଷମା କରିପାରୁ ନାହିଁ। ଜଣେ କଳାକାରର ଆତ୍ମାଭିମାନ ମୁଁ କାହିଁକି କଳନା କରି ପାରିଲି ନାହିଁ-ସେଇ ଅପରାଧବୋଧଟି ଏବେବି ମାଛ କଣ୍ଟାଭଳି ମୋ ତଣ୍ଟିରେ ଲାଗିଛି। ମୋର ଅବିମୃଷ୍ୟକାରିତା ଯୋଗୁଁ ଦୁଇ ବିଶିଷ୍ଟ କଳାକାରଙ୍କୁ ହରାଇବାକୁ ପଡ଼ିଲା।

ଭ୍ରମର ଭାଇଙ୍କ ସ୍ଥାନ ଅପୂରଣୀୟ, ତଥାପି ମାଡ଼ି ମକଚି ଆଗକୁ ଚାଲିଲୁ।

ଇତି ମଧ୍ୟରେ କେଇଟି ବର୍ଷ ବିତିଗଲା, ସ୍ୱାମୀ ସ୍ତ୍ରୀ, ବିଚାର, ଉଠା ପାଚେରୀ, ଅତିଥି, ମାଣିକଯୋଡ଼ି ପହିଲି ରଜ ମଂଚସ୍ଥ କରିବା ମଧ୍ୟରେ।

ମାଇନର ସ୍କୁଲ ପିଲାମାନେ ସେମାନଙ୍କ ପାଇଁ ଗୋଟିଏ ମଂଚ ସ୍ୱତନ୍ତ୍ର ଭାବରେ ସ୍ଥାପନ କଲେ ମାଇନର ସ୍କୁଲକୁ ଲାଗି। ମଝିରେ ମଝିରେ ସେମାନେ ମଧ୍ୟ ନାଟକ ପ୍ରଦର୍ଶନ କଲେ। 'ଭଦ୍ରାର୍ଜ୍ଜୁନ' ଏବଂ 'ଦେବୀ' ଏ ଦୁଇଟି ନାଟକ ମୁଁ ଦେଖିଛି।

ଆଉ ଗୋଟିଏ ବର୍ଷର କଥା।

ସେବର୍ଷ କୌଣସି କାରଣରୁ ମୁହଁ ଫୁଲାଫୁଲି ହୋଇ ରିହର୍ସାଲ ଅଧାରୁ ବନ୍ଦ ହୋଇ ଯାଇଥାଏ। ପହିଲି ରଜ ସକାଳୁ ସକାଳୁ ନାକ କାନ୍ଦୁରୀ ଝିଅର କାନ୍ଦଣା ଭଳି ମେଘ କୁଣ୍ଡା ଝାଡୁଥାଏ। ସୂର୍ଯ୍ୟ ବେଳେ ବେଳେ ମୁହଁକାଢ଼ି ପୁଣି ମେଘ ପଛପଟେ ଲୁଚି ଯାଉଥାଏ। ଅନ୍ୟବର୍ଷ ମାନଙ୍କରେ ଏତେବେଳକୁ ଗାଁଟି ଚଳଚଞ୍ଚଳ ହୋଇ ଉଠିଥାଏ। ପେଣ୍ଡାଲରେ ସିନ୍ ଟାଣିବା ପାଇଁ ଆୟୋଜନ ଚାଲିଥାଏ। କିନ୍ତୁ ଏବର୍ଷ କିଛି ନାହିଁ। ଝିଅ ପିଲାମାନେ କେବଳ ସକବାକ ହୋଇ ଏ ଘର ସେଘର ବୁଲୁଛନ୍ତି। ତାଙ୍କ ମନରେ ବି ସରାଗ ନାହିଁ। ମୁଁ ଚାଲିଲି ଗାଁ ସେ ମୁଣ୍ଡକୁ। ବର୍ଷାବେଳେ ଗାଁ ଭିତରେ ଛତା ଦରକାର ହୁଏ ନାହିଁ। ପିଣ୍ଡାକୁ ପିଣ୍ଡା ଲାଗି ଲମ୍ବି ଯାଇଥାଏ ଏ ମୁଣ୍ଡରୁ ସେ ମୁଣ୍ଡ। ଭଗି ଭାଇ ଦାଣ୍ଡ ପିଣ୍ଡାରେ ହାରମୋନିଅମ୍ ଧରି ଅନ୍ୟମନସ୍କ ଭାବରେ କୁଁ କାଁ କରୁଥାନ୍ତି। ମୁଁ ଯାଇ ପହଞ୍ଚିଲି। ମୋତେ ଦେଖି ରବିଭାଇ ଆସି ପହଞ୍ଚିଲେ। ବିନା ଥିଏଟରରେ ରଜଟା କେଡ଼େ ଅସହ୍ୟ ଆମେ ସମସ୍ତେ ଅନୁଭବ କରୁଥାଉ। ମୁଁ ପ୍ରଥମେ ମୁହଁ ଖୋଲିଲି- "ରଜଟା କ'ଣ ଇମିତି ଖାଲି ଖାଲି ଯିବ।" ସମସ୍ତେ ମୋ ମୁହଁକୁ ଚାହିଁଲେ-ହସିଲେ। ମୂର୍ଚ୍ଛାରର ହସ ଭଳି ଶୁଷ୍କ-ନିଷ୍ପ୍ରାଣ ହସ। ମୁଁ ପୁଣି କହିଲି- 'ଏତେ ବର୍ଷର ପରମ୍ପରା ଆମରି ସମୟରେ ତୁଟି ଯିବ। ଆମକୁ ଏ ପରମ୍ପରା ବଜାୟ ରଖିବାକୁ ହେବ। ଛୋଟ ବହିଟିଏ ହେଉ ପଛେ କରିବା।' ରବିଭାଇ କହିଲେ- 'ଘର ସଂସାର ନାଟକ କରିବାକୁ ମୋର ବହୁତ ଦିନରୁ ଇଚ୍ଛା ଥିଲା।' ଏତିକି କହି ସେ ଚୁପ୍ ରହିଲେ। ମୁଁ କହିଲି- 'ତେବେ ଘର ସଂସାର କରିବା। ବହି କାହିଁ ?' ଭଗି ଭାଇ ତାଙ୍କ ଔଷଧ

ଆଲମିରା ଉପରୁ ବହିଟି ଆଣି ହାରମୋନିଅମ୍ ଉପରେ ଥୋଇ ଦେଲେ। ନାଟକ ବହି ସେ ଆଗରୁ ଆଣି ରଖିଥାନ୍ତି। ଏ ବହିଟି ମୁଁ ଆଗରୁ ପଢ଼ିଥିଲି। ପ୍ରସ୍ତାବ ଦେଲି- ଆଜି ପହିଲି ରଜ, କାଲି ସଂକ୍ରାନ୍ତି। ଆଜି କାଲି ଦୁଇଟା ଲେଖାଏଁ ଚାରିଟା ରିହର୍ସଲ କରିବା। ଶେଷ ରଜଦିନ ଡ୍ରାମା ଷ୍ଟେଜ୍ କରିବା। ପୂର୍ବରୁ ବୈରାଗୀର ସଂସାର ମଞ୍ଚସ୍ଥ କରିଥାଇଁ। ପାର୍ଟ ପ୍ରାୟ୍ ମନେଥିବ। ତାକୁ ଠାକୁରାଣୀ ଗାଧୁଆ ଦିନ ମଞ୍ଚସ୍ଥ କରିବା। ପାର୍ଟ ଲେଖା ହେବ ନାହିଁ। ପ୍ରମ୍ପଟିଙ୍ଗ ଉପରେ କାମ ଚାଲିବ। ଷ୍ଟେଜ୍‌ରେ ପାର୍ଟିଅର ମାନେ ଯେଉଁ ଅଭିନୟ୍ କରିବା କଥା ତାକୁ ପ୍ରମ୍ପଟର ଇଂରାଜିରେ କହିଦେବେ। ତାହେଲେ କେଉଁଟା ଡାଇଲଗ୍ ଏବଂ କେଉଁଟା ଅଭିନୟ୍ ପାର୍ଟିଅର ବୁଝିପାରିବେ ନ ହେଲେ କଣାମାମୁଁର କାଣ୍ଡିଦଳ ଅବସ୍ଥା ଭୋଗିବାକୁ ହେବ। କାଣ୍ଡିଦଳର ପ୍ରମ୍ପଟର ପଛରୁ କହିଲା- ପ୍ରାଣେଶ୍ୱର-

ସୀତା କହିଲା- ପ୍ରାଣେଶ୍ୱର

ପ୍ରମ୍ପଟର କହିଲା- କି ସେନି ବଂଚିବି

ସୀତା କହିଲା- କି ସେନି ବଂଚିବି

ପ୍ରମ୍ପଟର- ତୁମେ ଗଲେ ଛାଡ଼ି

ସୀତା- ତୁମେ ଗଲେ ଛାଡ଼ି

ପ୍ରମ୍ପଟର- ଏତିକି ମାଗୁଣି

ପ୍ରମ୍ପଟର ପାଖରେ ଆହୁରି ଲୋକ ଠିଆ ହୋଇଥିଲେ। ତାଙ୍କ ଭିତରୁ ଜଣେ ଅନ୍ୟ ଜଣଙ୍କୁ କହିଲା ଦେ ଖଣ୍ଡେ ବିଡ଼ି। ପ୍ରମ୍ପଟର କହିଲା ବୋଲି ଭାବି ସୀତା ଲଗାଇ କହିଦେଲା- 'ଏତିକି ମାଗୁଣି ଦେ ଖଣ୍ଡେ ବିଡ଼ି।'

ରାଧାନାଥ ଭାଇ ଏତେବେଳକୁ ଆସି ପହଞ୍ଚି ଯାଇଥିଲେ। ସେ ଯୋଡ଼ିଦେଲେ- କାଣ୍ଡିଦଳ କଥା କ'ଣ କହୁଛୁ। ଏଇଠି ପରା ପ୍ରମ୍ପଟର କହିଲା, ତୁହି କିରେ ଧରାଧାମେ ଅଦ୍ୱିତୀୟ୍ ରବି। ପାର୍ଟିଅର ସେଇଆ କହିଲା। ଷ୍ଟେଜ ଆଗକୁ ପାର୍ଟିଅରଟି ମାଡ଼ି ଯାଇଥିଲା। ପ୍ରମ୍ପଟର ତାକୁ କହିଲା ପଛେଇ ପଛେଇ ଆ ଭାରି। ଡାଇଲଗ୍ ବୋଲି ଭାବି ପାର୍ଟିଅର ବି କହିଲା, 'ପଛେଇ ପଛେଇ ଆ ଭାରି।'

ଏକଥା କହୁ କହୁ ସେ ହସି ହସି ଗଡ଼ିଗଲେ।

ନୈରାଶ୍ୟର ମଳିନତା ହସର କୁଆର ଭିତରେ ଉଭେଇଗଲା ମୁହୂର୍ତ୍ତକ ମଧ୍ୟରେ।

ରିହର୍ସଲ ହେବ ବୋଲି ସମସ୍ତଙ୍କ ପାଖକୁ ଖବର ଗଲା। ସେମାନେ ଯେପରି ଚାତକ ଭଳି ଚାହିଁ ରହିଥିଲେ। ରାଗ ରୁଷା ମୁହଁ ଫୁଲାଫୁଲି କୁଆଡ଼େ ଗଲା, ଦ୍ୱିପ୍ରହର ବେଳକୁ ସମସ୍ତେ ଆସି ରିହର୍ସଲ ରୁମ୍‌ରେ ହାଜର।

ଶେଷ ରଜଦିନ ୪ଟା ବେଳକୁ ଯେତେବେଳେ ଭଗିଭାଇ, ଠାକୁରାଣୀ ମାକଣା ଘାରି ଗାଁ ଭିତର ଦେଇ ଆସୁଥିଲେ ସେତେବେଳେ କାନ୍ଧରେ ଓହଳା ହୋଇଥିବା ହାରମୋନିଅମ୍ ଉପରେ ତାଙ୍କ ହାତ ବିଜୁଳି ଭଳି ଚାଲୁଥିଲା। ବିଶିଦାଦି ଖୋଳ ଉପରେ କୁଟି ଦେଇ ଯାଉଥିଲେ ଧା ଧିନ୍ ଧା- ଧା ଧିନ୍ ଧା। ପିଲାମାନେ ଗିନି ମାଡ଼ କରୁଥିଲେ-ତାଳି ମାରୁଥିଲେ, ନାଚି ନାଚି ଗାଉଥିଲେ-

ନାଚି ନାଚି ପାଦ ବଥାଇବଣି
ଆ ମୋ କୋଳକୁ ନୀଳମଣି
ପାଦ ବଥାଇବଣି, ବଥାଇବଣି

ରଜ ଯେମିତି ଶୋଇ ପଡ଼ିଥିଲା। ଉଠି ବସିଲା। ଭାଉଜମାନେ ପରିହାସ କଲେ- ସେଇଆତ କଲ- ଫୁଲେଇ ହେଉଥିଲ କାହିଁକି ?

ନାଟ୍ୟକାର ରାମଚନ୍ଦ୍ର ମିଶ୍ର ନିଜକୁ ଯେପରି ଏ ନାଟକରେ ଅଜାଡ଼ି ଦେଇଥିଲେ। ଚଣ୍ଡୀପୁର ଓ ରଘୁନାଥପୁର ମଧ୍ୟରେ ଗ୍ରାମ୍ୟ ବିବାଦ, ଶାନ୍ତି ସ୍ଥାପନ ପାଇଁ ମଦନ ଚୌଧୁରୀଙ୍କ ଆତ୍ମଦାନ, ଉଭୟ ଗାଁରେ ଶାନ୍ତି ସ୍ଥାପନ ପାଇଁ ପୁଅ ଗୋପ ଚୌଧୁରୀର ତ୍ୟାଗ, ନିଷ୍ଠା, ଦଳିତ ନିଷ୍ପେଷିତଙ୍କ ପାଇଁ ତା'ର ପ୍ରତିବଦ୍ଧତା-ସବୁ ଯେପରି ୧୯୪୭-୫୦ ମଧ୍ୟରେ ଘଟିଥିବା ସାଂପ୍ରଦାୟିକ ଦଙ୍ଗା, ଶାନ୍ତି ପାଇଁ ଗାନ୍ଧିଜୀଙ୍କ ଅନଶନ, ଗାନ୍ଧିଜୀଙ୍କ ହତ୍ୟା,-ଦଳିତବର୍ଗଙ୍କ ପାଇଁ ରାଷ୍ଟ୍ରୀୟ ଉଦ୍‌ଘୋଷଣାର ଗୋଟିଏ ଗୋଟିଏ ଝଲକ ଦେଖିବାକୁ ମିଳୁଥିଲା ଘର ସଂସାରରେ। ଚରିତ୍ର ଚିତ୍ରଣ ଦୃଷ୍ଟିରୁ ଏ ନାଟକଟି ଥିଲା ଏକ ଅନବଦ୍ୟ କୃତି। ପ୍ରତିଟି ଚରିତ୍ର ବିପରୀତ ମୁଖୀ ଚରିତ୍ରର ସଂଘାତରେ ବିକଶିତ ହୋଇଥିଲେ। ସବୁଠାରୁ ମାର୍ମିକ ଚରିତ୍ରଟି ଥିଲା ତାରାମଣୀଙ୍କର। ମାତୃତ୍ୱ ଏବଂ ପରମ୍ପରା ବନ୍ଧନଗ୍ରସ୍ତ ମନର ସଂଘର୍ଷରେ ଏ ଚରିତ୍ରଟି ଉଜ୍ଜ୍ୱଳି ଉଠିଥିଲା। ଶାରଦା ଚରିତ୍ରରେ ଭାରତୀୟ ବଧୂର ଜୀବନ୍ତ ଛବି ମୂର୍ତ୍ତ ହୋଇଥିଲା।

ନାଟକ ଆରମ୍ଭ ହୋଇଥିଲା ଏକ ଉଦ୍‌ବେଗମୟ ପରିସ୍ଥିତିରୁ ଯେତେବେଳେ ମଦନ ଚୌଧୁରୀର ମୃତ୍ୟୁ ପାଇଁ ଯେଉଁ ହରିଶଙ୍କର ମହାପାତ୍ର ଦାୟୀ ତାଙ୍କରି କନ୍ୟାର ପାଣି ଗ୍ରହଣ କରିଥିଲା ଗୋପ, ତା ପୁଣି ନିଜ ପରିବାରର ଅଜ୍ଞାତରେ; କେବଳ ହରିଶଙ୍କର ବାବୁଙ୍କୁ ଆସନ୍ନ ମୃତ୍ୟୁ ମୁଖରୁ ରକ୍ଷା କରିବା ପାଇଁ।

ଶାରଦା ଯେତେବେଳେ ଗୋପର ହାତ ଧରି ନୂଆ ବୋହୂ ସାଜି ଚୌଧୁରୀ ଘରର ଏରୁଣ୍ଡି ଡେଇଁଲା ସେତେବେଳେ ହୁଳହୁଳି ପକାଇବାକୁ କି ପୂର୍ଣ୍ଣକୁମ୍ଭଟିଏ ଥୋଇବାକୁ ଚଣ୍ଡୀପୁର ଗାଁର ଜଣେ ବି ସ୍ତ୍ରୀ ଉପସ୍ଥିତ ନଥିଲେ। ରତି ଯାଇଥିଲା ଡାକିବାକୁ ଯେ ସ୍ତ୍ରୀ ଲୋକମାନେ ଜଣେଇ ଜଣେଇ ଚାହିଁ ହସିଥିଲେ। ହଁ କି ନାହିଁ କିଛି

କହି ନଥିଲେ। ସବାରି କାନ୍ଧେଇବାକୁ ଖୁଣ୍ଟେ ଗଉଡ଼ ମିଳିଲେ ନାହିଁ। ପୁଅ ବୋହୂ ଚଣ୍ଡୀପୁର ଗାଁ ଦାଣ୍ଡରେ ଚାଲି ଚାଲି ଆସିଲେ। ମଙ୍ଗୁ ମହାନ୍ତି ତେଣେ ମଙ୍ଗ ମୋଡ଼ୁ ଥିଲେ ଯେ। ହୁଳହୁଳି ପକାଇବାକୁ ତାରାମଣୀଙ୍କର କିଭ ଲେଉଟୁ ନଥିଲା। ସେ ମାତୃତ୍ବର ଆବେଦନର ହୁଳହୁଳି ପକାଇଲେ ସିନା କିନ୍ତୁ ପରମ୍ପରା ଆହ୍ବାନରେ ଶାରଦାକୁ ଠାକୁର ଘରକୁ ଛାଡ଼ି ନଥିଲେ।

ଘର ସଂସାରର ପଦେ ଗୀତ ମନେ ପଡୁଛି-

ଯେତେ କଷଣରେ ହେଲେ ନାରଖାର।
ଲହୁ ଲୁହ ଢ଼ାଳି ଗଢ଼େ ତା ସଂସାର।

ହଁ, ଲହୁ ଲୁହ ଢାଳି ତା ସଂସାର ଗଢ଼ିବାକୁ ଜୀବନ ପଣ କରି ଲାଗିଥିଲା ଶାରଦା। ବାପ ଘରକୁ ଛି କରିଥିଲା। ଦିଅର, ନଣନ୍ଦ, ଶାଶୁ, ସ୍ୱାମୀ ସମସ୍ତଙ୍କୁ ଆପଣେଇ ନେଇଥିଲା। ମାର୍ଗଶୀର ମାସ ଶୀତୁଳିଆ ପବନରେ ପାଚିଲା ଧନ କିଆରୀ ଗୋଟିଏ ପଟକୁ ଆଉଜି ଯିବା ଭଳି ଦିନ କେଇଟାରେ ସମସ୍ତେ ଢଳି ପଡ଼ିଥିଲେ ଶାରଦା ଆଡ଼କୁ।

ଢେର ବାଜା ବଜାଇ, ରୋଷଣୀ କରି ଘରକୁ ଆସିଥିଲା ଆଉ ଗୋଟିଏ ବୋହୂ-ଅନିମା। କିନ୍ତୁ ସହରି ସଭ୍ୟତା, ବାପଘର ବଂଶର ବୁନିଆଦିକୁ ଭୁଲିପାରି ନଥିଲା। ଏଥିରୁ ଯେଉଁ ସଂଘର୍ଷର ସୂତ୍ରପାତ ହେଲା ସେଥିରେ ଚୌଧୁରୀ ବଂଶର ଐତିହ୍ୟ ଯେପରି ସୂତାଖିଅରେ ଝୁଲୁଥିଲା। କିନ୍ତୁ ସେ ଐତିହ୍ୟକୁ ରକ୍ଷା କରୁଥିଲା ଶାରଦା। ଶାଶୁ ପଳାଇ ଥିଲେ ତୀର୍ଥ କରିବା ବାହାନାରେ ଏ ସଂଘର୍ଷରୁ ମୁକ୍ତି ପାଇବା ପାଇଁ।

ସେଦିନ ମି.ବର୍ମା ଆସିଥିଲେ ଅନିମା ଘରକୁ, ଅନିମା ସହିତ ପୂର୍ବରାଗର ସ୍ମୃତି ଚାରଣ କରିବାକୁ। କିନ୍ତୁ ବାଧା ଦେଇଥିଲା ଶାରଦା। ଅନିମା, ସ୍ୱାମୀଙ୍କୁ ରୋଗ ଶଯ୍ୟାରେ ଛାଡ଼ିଦେଇ ଯାଇଥିଲା ମି. ବର୍ମାଙ୍କର ନିମନ୍ତ୍ରଣ ରକ୍ଷା କରିବାକୁ। ଅତୀତରେ ମି. ବର୍ମାଙ୍କ ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରି ଅନିମା ତାଙ୍କୁ ଯେଉଁ ଅପମାନ ଦେଇଥିଲା, ତାର ନାରୀତ୍ୱକୁ କଳଙ୍କିତ କରି ସୁଧ ମୂଳ ଆଦାୟ କରିବାକୁ ମି.ବର୍ମା ତାକୁ ନିମନ୍ତ୍ରଣ କରିଥିଲେ। କିନ୍ତୁ ଭାରତୀୟ ନାରୀର ଯେଉଁ ଜ୍ୱଳନ୍ତ ଚିତ୍ରଟି ସେ ଶାରଦାଠାରେ ଦେଖିଥିଲେ ସେଥିରେ ଭାରତୀୟ ନାରୀ ସମାଜ ନିକଟରେ ତାଙ୍କର ମୁଣ୍ଡ ନଇଁ ଯାଇଥିଲା। ସେଥିପାଇଁ ସେ ଅନିମାକୁ ଅକ୍ଷତ ଅବସ୍ଥାରେ ଛାଡ଼ି ଦେଇଥିଲେ। ଅନିମାକୁ ମି.ବର୍ମା ସ୍ପଷ୍ଟ କହିଥିଲେ- "ତୁମର ସର୍ବନାଶ କରିବାକୁ ମୋର ତିଳେ ହେଲେ ଅନୁଶୋଚନାର କାରଣ ନାହିଁ। ସେଇ ଉଦ୍ଦେଶ୍ୟରେ ମୁଁ ସେଦିନ ତୁମ ଘରକୁ ଯାଇଥିଲି। କିନ୍ତୁ ଦେଖିଲି ତୁମକୁ ଆଉ ତୁମ ଘରର ମାନ ସମ୍ମାନ ହାନି

ଲାଭ ସବୁକୁ ଜଗି ରହିଛି ଦୁଇଟା ସତେଜ ଆଖି। କିନ୍ତୁ ଭାବି ଦେଖୁଛି ସେ କଳଙ୍କର ଦାଗ ଏକା ତୁମର ନୁହେଁ ଗୋଟାଏ ବଂଶର କଳଙ୍କ ହୋଇ ରହିଯିବ।"

ଅନିମା ଫେରିବା ବେଳକୁ ସ୍ୱାମୀ ତାର ରୋଗ ଶଯ୍ୟାରେ। ରୋଗୀର ସେବା କରୁ କରୁ ବିଳମ୍ବିତ ରାତ୍ରିରେ ଶାରଦା ଘୁମାଇ ପଡ଼ିଛି ରୋଗୀ ନିକଟରେ। ଖସିଗଲା ଗୋଡ଼ ତଳକୁ ତଳକୁ। ଦିଅର ଭାଉଜର ପବିତ୍ର ସଂପର୍କକୁ କଳଙ୍କିତ କରିଛି ଅନିମା। ପୁଣି ନିଜକୁ ଶେଷ କରି ଦେବାକୁ ବିଷପାନ କରିଛି। ଶାରଦାର ସେବା ଅନିମାକୁ ମରଣ ଦୁଆରୁ ଫେରାଇ ଆଣିଛି। ଏ ସଂଘର୍ଷରେ ବିଜୟିନୀ ହୋଇଛି ଶାରଦା।

ନାଟକୀୟ ଉତ୍କଣ୍ଠା ପ୍ରଲମ୍ବିତ ହୋଇଥିଲା ଅନ୍ତିମ ଚରଣ ପର୍ଯ୍ୟନ୍ତ। ତେଣୁ ବିନା ପ୍ରସ୍ତୁତିରେ ମଧ୍ୟ ନାଟକଟି ଦର୍ଶକମାନଙ୍କୁ ବାନ୍ଧି ରଖିବାରେ ସଫଳ ହୋଇଥିଲା।

ସଂଗଳାଇର କୃଷ୍ଣ ଭାଇନା ଆମ ମଂଚରେ ଅଭିନୟ କରୁଥିଲେ। ବୋଧହୁଏ ୧୯୬୨ ମସିହା ହେବ। ସେ, ବିଶୁଭାଇନା, ଅଗଣି ଭାଇନା ଆମ ଗାଁ ବାଲୁ ମାମୁଁ ତାଙ୍କ ଗାଁରେ ଗୋଟିଏ ନାଟକ ମଂଚସ୍ଥ କଲେ। ଆମେ ତ ଗୋଡ଼ଟେକି ବସିଥାଉ। ଅଣ୍ଟଭିଡ଼ି ବାହାରିଲୁ ତାଙ୍କୁ ସାହାଯ୍ୟ କରିବାକୁ। ଶୀତଦିନ। ଲୋକେ ଖୋଲା ଆକାଶ ତଳେ ଠାକୁ ଠା ନିଆଁ ଜାଳି ନାଟକ ଦେଖିଲେ।

ଗାଁ ଗହଳିରୁ ପାରମ୍ପରିକ ମନୋରଂଜନର ମାଧ୍ୟମ ଲୋପ ପାଇ ଯାଇଥିଲା। ଯାତ୍ରାର ଆଦର ନ ଥିଲା। ସେଥିପାଇଁ ଶୀତ କାକରରେ ଥରି ଥରି ଲୋକେ ନାଟକ ଦେଖୁଥିଲେ-ଦୂରଦୂରାନ୍ତରୁ ଧାଇଁ ଆସୁଥିଲେ ନାଟକ ଦେଖିବା ପାଇଁ।

ନିତ୍ୟାନନ୍ଦ ଯିବାପରେ ନୃତ୍ୟ କ୍ଷେତ୍ରରେ ଗୋଟିଏ ଶୂନ୍ୟସ୍ଥାନ ରହିଗଲା। ବୟସ ଗଡ଼ି ଯାଉଥିବା ଝିଅର ବାପଟି ଯେପରି ବିକଳରେ ଯାହାକୁ ଦେଖେ ତାକୁ ବରଘରଟିଏ ଖୋଜି ଦେବାକୁ ଅନୁରୋଧ କରେ ଆମେ ସେପରି ଖୋଜି ବୁଲିଲୁ ଜଣେ ନୃତ୍ୟ ଗୁରୁ। ଦୈବାତ୍ ସନ୍ଧାନ ମିଳିଲା ପିପିଲି ଭାସ୍କର ଭାଇନାଙ୍କର (ଭାସ୍କର ଚନ୍ଦ୍ର ଦିକ୍ଷିତ) ମୁଁ ପିପିଲି ମାଇନର ସ୍କୁଲରେ ପଢୁଥିବାବେଳେ ତାଙ୍କ ପରିବାରର ପ୍ରତ୍ୟେକ ସଦସ୍ୟଙ୍କୁ ଘନିଷ୍ଠ ଭାବରେ ଜାଣିଥିଲି। କିନ୍ତୁ ଭାସ୍କର ଭାଇନାଙ୍କୁ ଏ ବିଦ୍ୟା ଜଣା ବୋଲି ମୁଁ ଭୁଲି ଯାଇଥିଲି। ସେ ଜଣେ ଦକ୍ଷ ନୃତ୍ୟ ଗୁରୁ। ପୁଣି ଜଣେ ବିଶିଷ୍ଟ ତବଲା ବାଦକ। ସେ ପ୍ରାୟ ପାଞ୍ଚ ଛ ବର୍ଷ ଧରି ଆମକୁ ସାହାଯ୍ୟ କଲେ।

ଥରେ ଜନତା ରଂଗମଂଚ ଭୁବନେଶ୍ୱର ଆସି କସ୍ତୁରବା ନାରୀମହଲରେ ଅଭିନୟ ପ୍ରଦର୍ଶନ କରୁଥାନ୍ତି। ମୁଁ ପ୍ରତ୍ୟେକ ନାଟକ ଦେଖିବାକୁ ଯାଏ। ସେଦିନ ଯାଇଥିଲି ଶ୍ରୀ ବସନ୍ତ କୁମାର ମହାପାତ୍ରଙ୍କର ଶେଷ ଶ୍ରାବଣ ଦେଖିବାକୁ।

ଏହାର ବର୍ଷକ ପୂର୍ବର କଥା। ଆଠ ନମ୍ବର ଗୋପବଂଧୁ ସ୍ମୃତି ସଂସଦ ପକ୍ଷରୁ ଗୋଟିଏ ନାଟକ ମଂଚସ୍ଥ କରିବାକୁ ଆମ୍ଭେମାନେ ସ୍ଥିର କରିଥାଉ। ଜଣେ ବଂଧୁ ଶ୍ରୀ

ମହାପାତ୍ରଙ୍କ ଠାରୁ 'ଅସ୍ତରାଗର କବିତା' ନାମରେ ଗୋଟିଏ ପାଣ୍ଡୁଲିପି ଆଣି ଦେଇଥିଲେ। ଶେଷ ଶ୍ରାବଣ ସେଇ ପାଣ୍ଡୁଲିପିର ନାମାନ୍ତର।

ଏଇଟି ଥିଲା ନୂତନ ସ୍ୱାଦର ଚମତ୍କାର ନାଟକଟିଏ।

ଗୋଟିଏ ନିଝୁମ ଝଡ଼ ରାତିରେ ଜୀଅନ୍ତା ଯୁବତୀଟିକୁ ନଈ ଭିତରୁ ଛାଣି ଆଣିଥିଲା ସନିଆଁ। ତାକୁ ଆଶ୍ରୟ ଦେଇଥିଲା ନିଜ ଘରେ। ଛାତି ତଳର ବ୍ୟଥା ଭଳି ସେ ସନିଆଁକୁ ନିଜ ହୃଦୟ ଭିତରେ ଧରି ରଖିଥିଲା। କିନ୍ତୁ ସନିଆଁ ଥିଲା ଆକାଶ ଠାରୁ ଆହୁରି ଦୂରରେ। ସନିଆଁ ଲାଗି ପଡ଼ିଥିଲା ମାଣିକ ପାଇଁ ବର ଖୋଜିବାରେ। ମାଣିକକୁ ହାତକୁ ଦିହାତ କରି ସୁଖୀ କରିବାକୁ। ମାଣିକ ଆଖିର ଭାଷା ପଢ଼ିବାକୁ-ଛାତି ତଳର ବେଦନା ବୁଝିବାକୁ ତା'ର ତର ନ ଥିଲା। ମାଣିକ ଆଖିରେ ଆଖିଏ ଲୁହ- ଛାତିରେ ଛାତିଏ କୋହ ଧରିଥିଲା ସିନା ତୁଣ୍ଡଖୋଲି କହିବାକୁ ଜିଭ ଲେଉଟୁ ନଥିଲା।

ଖଳ ଲୋକଙ୍କର ପାଟି ସବୁଠାରେ ଜୋର୍‌ରେ ଶୁଭେ। ସମସ୍ତେ କାନ ଡେରି ଶୁଣନ୍ତି-ବିଶ୍ୱାସ କରନ୍ତି। ସେଇମାନଙ୍କ କଥାରେ ସୀତା ଠାକୁରାଣୀ ଅସତୀ ହେଲେ।

ସନିଆଁ ଆଉ ମାଣିକକୁ କେନ୍ଦ୍ର କରି ଯେଉଁ କଳଙ୍କିତ କାହାଣୀ ତୁଣ୍ଡରୁ ତୁଣ୍ଡକୁ ଘୁରି ବୁଲିଲା ତାକୁ ସହିନେବା ପାଇଁ ସନିଆଁ ପ୍ରସ୍ତୁତ ଥିଲା କିନ୍ତୁ ବିଚାରୀ ମାଣିକ ପାରିଲା ନାହିଁ। କାହିଁକି ତାଭଳି ଜଣେ ନିଷ୍ପାପ, ନିରପରାଧ ପୁରୁଷଟି ଦୁର୍ନାମର ବୋଝ ବହିବ ?

ସେଇଭଳି ଏକ ଝଡ଼ ରାତିରେ ଘରୁ ବାହାରି ମାଣିକ ଡେଇଁ ପଡ଼ିଲା ନଈ ଭିତରକୁ। ଯୋଉଠୁ ଆସିଥିଲା ସେଇଠାକୁ ଚାଲିଗଲା। ନଈ ଯେମିତି ବହୁଥିଲା ସେମିତି ବହି ଚାଲିଲା। କେବଳ ଯାହା ଦି ଆଞ୍ଜୁଳା ପାଣି କୂଳ ଉପରକୁ ଛିଟିକି ପଡ଼ିଲା।

ଏ ନାଟକ ଦେଖିବା ପରେ କି ଆଉ ମନ ସ୍ଥିର ରହେ ? ଏ ବହିଟି ମଂଚସ୍ଥ କରିବାକୁ ସ୍ଥିର ହେଲା। ତଳ ସାହିର ନୃସିଂହକୁ ସନିଆଁ ଭୂମିକା ପାଇଁ ମନୋନୀତ କଲୁ। କଳା ମିଚି ମିଚି ବଳିଷ୍ଠ ଚେହେରାର ଯୁବକ। ମାଂସପେଶୀ ଉପୁଚା ଦେହ। ସେଇ ଠିକ୍ ହେବ। ଏଥର ସେ ପ୍ରଥମ କରି ମଂଚକୁ ଆସିଲା-ପୁଣି ନାୟକ ଭାବରେ କିନ୍ତୁ ଅଭିନୟରେ ମନପ୍ରାଣ ଢାଳି ଦେଲା।

ଏହା ପୂର୍ବରୁ ପୁଅ ପିଲାମାନେ ସ୍ତ୍ରୀ ଭୂମିକାରେ ଅଭିନୟ କରୁଥିଲେ। ଏଥର ସ୍ଥିର କଲୁ ଝିଅ ପିଲାଟିଏ ଆଣିବୁ। ଭୁବନେଶ୍ୱରରେ କାଁ ଭାଁ ସୌଖୀନ ମଂଚ ଗଢ଼ି ଉଠିଥାଏ। ଲେଡ଼ି ଆର୍ଟିଷ୍ଟ ପ୍ରାୟ ନଥାନ୍ତି। ଝିଅ ପିଲାଟିଏ ନୂଆ ବାହାରି ଥାଏ। ସରୋଜିନୀ ପଣ୍ଡା। ଶହେ ଟଙ୍କା ନେଇ ଦୁଇ ରାତି ଦୁଇଟି ନାଟକରେ ଅଭିନୟ କରିବ ବୋଲି ରାଜି ହେଲା। ରବିଭାଇ ନିର୍ଦ୍ଦେଶନା ଦେଲେ-ବିଜି ସାହାଯ୍ୟ କଲା।

ମଲାକହ୍ଣ ନାଟକରେ ମଂଚ ମାୟା ସୃଷ୍ଟି କରି ଜନତା ରଂଗମଂଚ ବେଶ୍ ସୁନାମ ଅର୍ଜନ କରିଥିଲା । ଶେଷ ଶ୍ରାବଣ ଥିଲା ମଂଚ କୌଶଳର ସର୍ବୋତ୍ତମ ପରି ପ୍ରକାଶ । ଝଡ଼ରାତି ଓ ନଈ ବଢ଼ିର ଦୃଶ୍ୟ ଥିଲା ନିଖୁଣ-ବାସ୍ତବ ।

ବହୁବର୍ଷ ଯାଏଁ ଦେଖିଛି ଷ୍ଟେଜ୍‌ରେ ଆଲୁଅ ଜଳୁଥିବ; 'ଓଃ କି ଅନ୍ଧାର' ବୋଲି କହି ଅଭିନେତାଟିଏ ଅଣ୍ଡାଳି ହେଉଥିବ, ଝୁଣ୍ଟି ପଡୁଥିବ-ଦର୍ଶକର ମାନସ ପଟରେ ଅନ୍ଧକାରର ବିଶ୍ୱାସ ସୃଷ୍ଟି କରୁଥିବ । ସେ ସମୟ ଆଉ ନଥିଲା । ଦର୍ଶକ ମନରେ ବିଶ୍ୱାସ ସୃଷ୍ଟି କରିବାକୁ ମଂଚ ମାୟାର ଆଶ୍ରୟ ନେବାକୁ ପଡୁଥିଲା । ମୋର ମନେଅଛି 'ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍‌ର ଶ୍ରୀଲୋକନାଥ ନାଟକ କଥା । ସେଥିରେ ସାପ କାମୁଡ଼ିବା ଦୃଶ୍ୟ ଦେଖି ଦର୍ଶକଙ୍କ ଆଖି ବୁଜି ହୋଇ ଯାଉଥିଲା । ସତକୁ ସତ ସାପଟିଏ ଅବା ପେଟେଇ ପେଟେଇ ଆସୁଥିଲା-ଏଣେ ତେଣେ ବୁଲି କ'ଣ ଖୋଜୁଥିଲା । ଏହାର ବହୁ ପୂର୍ବରୁ ଆମ ମଂଚରେ ମଂଚମାୟାର ଶୁଭାରମ୍ଭ ହୋଇ ସାରିଥିଲା, ତାରାବାଈ ନାଟକରେ । ସତୀ ଚିତାର ଲେଲିହାନ ଶିଖା ଗାଢ଼ ଅନ୍ଧକାର ଭିତରେ ଦାଉ ଦାଉ ଜଳୁଥିଲା । ସେଇ ଜଳନ୍ତା ନିଆଁ ଭିତରକୁ ତାରା ବାଈ ଡେଇଁ ପଡ଼ିଥିଲା । ଷ୍ଟେଜ୍ ଅନ୍ଧାର କରିବାକୁ ଷ୍ଟେଜ ଭିତରୁ ଦଉଡ଼ି ସାହାଯ୍ୟରେ ଡେ ଲାଇଟ୍‌କୁ ଗାତ ଭିତରକୁ ଖସାଇ ଦିଆ ଯାଉଥିଲା, ପୁଣି ଆଲୋକିତ କରିବାକୁ ହେଲେ ଉପରକୁ ଉଠାଇ ଅଣାଯାଉଥିଲା । ଯେ ୧୯୪୫ ମସିହାର କଥା । ଏଫେକ୍ଟଟି ଯେତେ ଗୁରୁତ୍ୱପୂର୍ଣ୍ଣ ନଥିଲା, ଦୃଶ୍ୟଟିକୁ ପ୍ରଭାବଶାଳୀ କରିବାର ଅବଧାରଣା ଓ ପ୍ରୟାସ ଥିଲା ଅଧିକ ମହତ୍ତ୍ୱପୂର୍ଣ୍ଣ ।

ଜନତା ରଂଗମଂଚରେ ଯୋଉ ଏଫେକ୍ଟ ଏ ଆଖି ଦେଖିଛି ତା ସୃଷ୍ଟି କରି ନପାରିଲେ ମନଟା ପିତା ହୋଇଯିବ । ଗାଁରେ ଇଲେକ୍ଟ୍ରି ନାହିଁ-ଜେନେରେଟର ପାଇଁ ପଇସା ନାହିଁ । ଷ୍ଟେଜ୍‌କୁ ଅନ୍ଧାର କରିବା ବଡ଼ କଥା ନଥିଲା । ଭିନ୍ନ ଉପାୟରେ ଆମେ ଷ୍ଟେଜ୍‌କୁ ଅନ୍ଧାର କରୁଥିଲୁ କିନ୍ତୁ ଅନ୍ୟାନ୍ୟ ଏଫେକ୍ଟ କ'ଣ ଡେ ଲାଇଟ୍‌ରେ ସମ୍ଭବ ? ରବି ଭାଇ ମୁଁ ଘଣ୍ଟା ଘଣ୍ଟା ଧରି ଆଲୋଚନା କରୁ । ଗୋଟିଏ ଗୋଟିଏ ଆଇଡିଆ ମୁଣ୍ଡକୁ ଢୁକେ, ଖୁବ୍ ଖୁସି ହେଉ କିନ୍ତୁ ପରମୁହୂର୍ତ୍ତରେ ଅନୁଭବ କରୁ, ଏ ଗୋଟାଏ ଇଟୋପିଆନ୍ ଆଇଡିଆ । ଭାବିବାକୁ ସହଜ କିନ୍ତୁ କରିବାକୁ କଷ୍ଟ । ଶେଷକୁ ଗୋଟିଏ ସିଦ୍ଧାନ୍ତରେ ପହଞ୍ଚିଲୁ । ମୁଁ ଆନୁସଂଗିକ ଜିନିଷ ତିଆରିରେ ଲାଗିଗଲି । ବିଜି, ରାମ ସାହାଯ୍ୟ କଲେ । ତାଙ୍କର ଆଇଡିଆ ଭଲ । ହାତ ଦେଖାଇଲେ ବାହା ଗିଳିବେ ।

ପ୍ରଥମ ଦୃଶ୍ୟଟି ଥିଲା ନଈ ଭିତରେ ଯୁବକଟିଏ ନୌକା ଚଳାଉଥିବାର ସିଲହଟ ଛବି । ଆଗ ଆଲୁଅ ଗୁଡ଼ିକ ଅନ୍ଧାର କରି ଦିଆଗଲା । ବତା ଏବଂ କାଗଜରେ ତିଆରି ଗୋଟିଏ ଡଙ୍ଗା ସନିଆଁ ଅଣ୍ଟରେ ବାନ୍ଧି ଦିଆଗଲା । ହାତରେ ଧରିଲା ଗୋଟିଏ କାତ । ସ୍ରୋତର ପ୍ରତିକୂଳରେ ଯିବା ପାଇଁ କଠୋର ସଂଗ୍ରାମ କରୁଥିବାର ଅଭିନୟ କଲା ।

ଆଗରେ ରହିଲା ଗୋଟିଏ ସରୁ ଧଳା ପରଦା। ପଛପଟୁ ଆଲୋକ ସଂପାତ କରାଗଲା। ଦୃଶ୍ୟଟି ପୁରା ପ୍ରାକୃତିକ ହେଲା।

ଦ୍ୱିତୀୟ ଦୃଶ୍ୟ ନଈ ଉଛୁଳୁଛି। ବର୍ଷା ଲାଗି ରହିଛି। ଓଦା ସରସର ମାଣିକକୁ କାନ୍ଧରେ ପକାଇ ସନିଆଁ ଆସୁଛି। ଆମର ମାଟି ଷ୍ଟେକ୍। ନଇବନ୍ଧ ତିଆରି ହେଲା। କାଶତଣ୍ଡୀ ଗଛ, ବେଣାଗଛ ତା ଉପରେ ପୋତା ହେଲା। ଘାସ ଚେକା ଖଞ୍ଜି ଦିଆଗଲା। ଗାଁ ଗହଳିରେ ଏସବୁ ଅବା କୋଉ ଅପୂର୍ବ। ପଛପଟେ ସାଇକ୍ଲୋମା। ଦୂରରୁ ନଇ ଆରପଟର ଗଛ ସବୁ ଯେପରି ଦେଖାଯାଏ ସେହିପରି ଚିତ୍ର କାଗଜରେ କରି ସାଇକ୍ଲୋମା ଉପରେ ମଢ଼ାଇ ଦେଲୁ। ଷ୍ଟେକ୍ ମଝିରେ କରିସୂତା ସବୁ ଉପରୁ ତଳକୁ ଓହଳାଇ ଦିଆଗଲା। କନତା ରଂଗମଂଚରେ ଏଇ କରିସୂତା ମାଧ୍ୟମରେ ବର୍ଷାର ଏଫେକ୍ଟ ସୃଷ୍ଟି କରାଯାଇଥିଲା। କିନ୍ତୁ ଅନ୍ଧାର ଭିତରେ କରିସୂତା ଦେଖାଇବା ଲାଗି ସେମାନେ ମଂଚକୁ ଘନ ଘନ ଆଲୋକିତ ଓ ଅନ୍ଧକାର କରୁଥିଲେ। ଆମେ ଏ ବାବତରେ ପାଦେ ଆଗେଇ ଗଲୁ। ଗୋଟିଏ ଫୁଲଝରି ବାଣ ଜଳାଇ ତାକୁ ଗୋଟିଏ ହାଣ୍ଡି ଭିତରେ ଭର୍ତ୍ତି କରୁ ପୁଣି କାଢ଼ି ଆଣୁ। ଏଥିରୁ ବିଜୁଳିର ଚମତ୍କାର ଏଫେକ୍ଟ ସୃଷ୍ଟି ହେଲା। ବର୍ଷା ଦିଶିଲା। ବିଜୁଳି ଝଲକରେ ସନିଆଁ ମାଣିକ ବେଳେବେଳେ ଦିଶୁଥିଲେ ପୁଣି ଅନ୍ଧକାର ଭିତରେ ଲୀନ ହୋଇ ଯାଉଥିଲେ। ସେଇ ନଈ କୂଳରେ ସନିଆଁର କୁଡ଼ିଆ ଘରଟିଏ ମଧ୍ୟ ତିଆରି କରିଥିଲୁ। ସନିଆଁ ମାଣିକକୁ ଧରି କୁଡ଼ିଆ ଭିତରେ ପଶିବା ପର୍ଯ୍ୟନ୍ତ ଆଲୁଅ ଅନ୍ଧକାରର ଲୁଚକାଳି ଖେଳ ଚାଲିଲା। ଗୋଟିଏ ପ୍ରାକୃତିକ ଦୃଶ୍ୟର ଭ୍ରମ ସୃଷ୍ଟି ହେଲା।

ଶେଷ ଦୃଶ୍ୟଟି ଥିଲା ବଢ଼ନ୍ତା ନଈକୁ ମାଣିକ ଡେଇଁବ। କନତା ରଂଗମଂଚରେ ଏ ଏଫେକ୍ଟଟି ଯେପରି ସୃଷ୍ଟି କରାଯାଇ ଥିଲା ଅବିକଳ ସେହିପରି କଲୁ। ଗୋଟିଏ କନାକୁ କନଭେୟର ବେଲ୍ଟ ଭଳି କଲୁ। ତା ଉପରେ ବିଲାତି ଦଳ କାଠିକୁଟା ପଡ଼ିଲା। ସବୁ ଭାସି ଭାସି ଗଲା ଭଳି ଦିଶିଲା।

ଶେଷ ଦୃଶ୍ୟରେ ମାଣିକ ଘରଛାଡ଼ି ଯିବା ସମୟରେ ଗୋଟିଏ ଗୀତ ଖଞ୍ଜି ଦେଲୁ। ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ସେଇ ଦରଦୀ ସଂଗୀତ-

ସବୁଥିରୁ ବଂଚିତ କରି
    କେଉଁ ଯଶବାନା ଉଡାଇବ ହେ
ଯାହା ଦେଇଥିଲ ସବୁ ତ ନେଲଣି
    ଆଉ କେଉଁ ସୁଖ ଛଡ଼ାଇବ ହେ।

ଠିକ୍ ଶେଷ ଦୃଶ୍ୟ ବେଳକୁ ଏ ଚିନ୍ତାଟି ମୋ ମୁଣ୍ଡକୁ ଡୁକିଲା। ସୂର୍ଯ୍ୟ ନାରାୟଣକୁ କହିଲି ଏଇଟି ଗାଇବାକୁ। ସେ ଏ ଗୀତଟି ଗାଇଥିଲା ଖୁବ୍ ଦରଦ ଦେଇ-ଠିକ୍

ଯେପରି ଶ୍ରୀ ରଘୁନାଥ ପାଣିଗ୍ରାହୀ ଏ ଗୀତଟି ଗାଆନ୍ତି।

ଚିତ୍ତ ଏଥିରେ ସନିଆଁର ବଂଧୁ ମକରା ଭୂମିକାରେ ଅଭିନୟ କରିଥିଲା। ମୋର ମନେହୁଏ ଏଇଟି ଥିଲା ତା'ର ସର୍ବଶ୍ରେଷ୍ଠ-ମନଛୁଆଁ ଅଭିନୟ।

ଏହାର କେଇବର୍ଷ ପରେ ଶେଷ ଶ୍ରାବଣ ସିନେମା ହେଲା। ପ୍ରଯୋଜକ ବିଜୟ ମହାନ୍ତି। ଆମେ ଦୁହେଁ ସ୍କୁଲ, କଲେଜରେ ଏକାଠି ପଢୁଥିଲୁ, ଗୋଟିଏ ମେସ୍‌ରେ ରହୁଥିଲୁ। ନାଚ ଗୀତ ପ୍ରତି ତା'ର ଆଗ୍ରହଥିବା ମୁଁ ଲକ୍ଷ୍ୟ କରି ନାହିଁ। ସେ ମଧ୍ୟ ଏଇ ଗୋଟିଏ ମାତ୍ର ଫିଲ୍ମ ପ୍ରଯୋଜନା କରିଛି। ତା'ର ପତ୍ନୀ ପ୍ରମିଳା ଆମ ଗାଁ ଝିଅ। ସେ ଆମ ମଂଚ ସହିତ ସଂଶ୍ଳିଷ୍ଟ ଥିଲା। ସେ ଏ ନାଟକକୁ ଆମ ମଂଚରେ ଦେଖିଛି। ଏଥିରେ ତାର କିଛି ଭୂମିକା ଥିବ ଅବା।

ଭିନ୍ନସ୍ୱାଦର ନାଟକ 'ଶେଷ ଶ୍ରାବଣ'ର ସଫଳତା ଆମକୁ ଖୁବ୍ ଆଶାନ୍ୱିତ କଲା। ଦର୍ଶକମାନଙ୍କ ରୁଚିବୋଧ ସହିତ ଆମର ନୂତନ ପରିଚୟ ହେଲା। ମନଖୋକିଲା ଭାବ ଗମ୍ଭୀର ନାଟକଟିଏ।

ପୁରୀ କଲେଜରେ ପଢୁଥିବା ବେଳେ ପ୍ରାଣବଂଧୁ କରଙ୍କର ଶ୍ୱେତ ପଦ୍ମା (୧୯୫୮) ଏକାଙ୍କିକା ପଢ଼ିଥିଲି। ଦୁର୍ବଳ ସ୍ୱାସ୍ଥ୍ୟ ସଂପନ୍ନ ବରଟିକୁ ଦେଖି ସଂଗିନୀଟିଏ ଶ୍ୱେତା କାନରେ କହି ଦେଇଥିଲା- 'ତୋ ବରକୁ ଟି.ବି. ହୋଇପାରେ।' ବାସ୍ ସେତିକି। ବିଚାରୀଟି ଲାଗି ପଡ଼ିଥିଲା ସ୍ୱାମୀର ଯତ୍ନ ନେବାରେ। କେତେବେଳେ ଖାଇବେ-କ'ଣ ଖାଇବେ-କେତେବେଳେ ଶୋଇବେ-କେତେବେଳେ ଉଠିବେ...। ସେ କ'ଣ କେବେ କଳ୍ପନା କରିଥିଲା ଯେ ତାର ଆନ୍ତରିକତାକୁ ସ୍ୱାମୀ ଅଦଉତି ବୋଲି ବୁଝିବେ ? ସେ କ'ଣ ଜାଣିଥିଲା ତା'ର ଗଭୀର ପ୍ରେମ ସୁଖୀ ସଂସାରକୁ ନଷ୍ଟ ଭ୍ରଷ୍ଟ କରିଦେବ ? ସୁନ୍ଦରୀଟିଏ ହୋଇ ଜନ୍ମହେବା ଏଡ଼େ ପାପ ବୋଲି ସେ କ'ଣ ଭାବିଥିଲା ?

ସ୍ୱାମୀର ଭାବାନ୍ତର ଲକ୍ଷ୍ୟ କରୁଥିଲା ଶ୍ୱେତା। କିନ୍ତୁ ତୁଣ୍ଡ ଖୋଲି ତା'ର ଉଦ୍‌ବେଗର କାରଣ କହିପାରୁ ନଥିଲା।

ହିନ୍ଦୁ ସ୍ତ୍ରୀ ସେ।

ତୁଣ୍ଡଖୋଲି କିପରି କହିପାରନ୍ତା ଯେ ସ୍ୱାମୀର ମୃତ୍ୟୁ ଆଶଙ୍କା ଏଡ଼ାଇବାକୁ ସେ ସ୍ୱାମୀର ଯତ୍ନ ନେଉଛି। ତା' ମନରେ ଆଉ କିଛି ନାହିଁ।

କେତେ ଛୋଟ ଘଟଣାକୁ ନେଇ କେଡ଼େ ଚମତ୍କାର ନାଟକୀୟ ସଂଘର୍ଷ ସୃଷ୍ଟି ହୋଇଛି। ଶ୍ୱେତପଦ୍ମା ଗୋଟିଏ ମାଇଲ ଖୁଣ୍ଟି ହୋଇ ରହି ଯାଇଛି।

ଆମ ଗାଁରେ ମଞ୍ଚସ୍ଥ କରିବାକୁ ମନ ଖୋକୁଥିଲା ସେଇଭଳି ଏକ ପୂର୍ଣ୍ଣାଙ୍ଗ ନାଟକ, ଯାହାର ଆବେଦନ ହୃଦୟର ସୂକ୍ଷ୍ମତନ୍ତ୍ରୀକୁ ଆଲୋଡ଼ିତ କରିବ। ପୁଣି ଗାଁ

ଗହଳିର ଦର୍ଶକମାନଙ୍କ ମନକୁ ପାଇବା ଭଳି ବିଷୟଟିଏ ଥିବ। ଛୋଟ ଘଟଣାରୁ ନାଟକୀୟ ଦ୍ୱନ୍ଦ ସୃଷ୍ଟି ହୋଇଥିବ।

ଦିନେ ଶଙ୍ଖା ସିନ୍ଦୂର ଦେଖିବାର ସୁଯୋଗ ମିଳିଲା।

ସ୍ୱାମୀ ଏବଂ ଶାଶୁକୁ ନେଇ ବାଣୀର ଛୋଟ ସଂସାର।

ପୃଥିବୀ ପୃଷ୍ଠରେ ମଣିଷ ପାଦ ଥାପିଲା ଦିନଠାରୁ ସୁଖ ପଛରେ ଧାଇଁଛି। କେବେ ଅଟକି ନାହିଁ, କ୍ଳାନ୍ତି ଅନୁଭବ କରି ନାହିଁ। ଏଇ ଶେଷହୀନ ଯାତ୍ରା ମଣିଷ ସମାଜ ପାଇଁ ଅନେକ ସମ୍ଭାବନା ସୃଷ୍ଟି କରିଛି ପୁଣି ସୃଷ୍ଟି କରିଛି ବିଭୀଷିକାମୟ ଅନାଗତ। କିନ୍ତୁ ସୁଖର ସଂଜ୍ଞା ଏ ପର୍ଯ୍ୟନ୍ତ ନିରୂପିତ ହୋଇ ନାହିଁ, ଆପେକ୍ଷିକତାର ଆବରଣ ଭିତରେ ସୁଖର ସଂଜ୍ଞା ମୁହଁ ଲୁଚାଇଛି। ନିଜର ଅଭିଜ୍ଞତା ଭିତରୁ ରାସବିହାରୀ ବାବୁ ସୁଖର ସଂଜ୍ଞା ଝିଅ ପାଇଁ ନିରୂପଣ କରିଥିଲେ। ତାଙ୍କର ଇଚ୍ଛା ଜ୍ୱାଇଁ ଶରତ ଭଲ ଦି ପଇସା ରୋଜଗାର କରୁ- ଝିଅ କଥାରେ ଜ୍ୱାଇଁ ଚଳୁ-ଝିଅଟି ସୁଖରେ ରହୁ।

ଦିନ ଦ୍ୱିପ୍ରହରେ କଟକ ସହରର ରାସ୍ତା ଉପରେ ଯେଉଁଦିନ ରାସବିହାରୀ ବାବୁ ମାଧବୀ ସହିତ ଶରତକୁ ଦେଖିଲେ ଏବଂ ଜାଣିଲେ ଯେ ମାଧବୀ ଗୋଟାଏ ଗଣିକାର ଝିଅ, ତାଙ୍କ ମୁଣ୍ଡ ଉପରେ ଅଗ୍ନିଶ ଛିଡ଼ି ପଡ଼ିଲା। ସେଇଦିନ ମଧ୍ୟ ଶରତ ସହିତ ମାଧବୀକୁ ଦେଖି ବାଣୀର ମନ ଭିତରଟା ଅଜଣା ଆଶଙ୍କାରେ ଥରି ଉଠିଥିଲା। ଏଇ ଆକସ୍ମିକ ଘଟଣାର ଖିଅ ଧରି ସେମାନେ ଶରତ ସହିତ ମାଧବୀର ଅବୈଧ ସଂପର୍କ ଅଛି ବୋଲି ଧରି ନେଇଥିଲେ।

ଶୀର୍ଣ୍ଣ ସ୍ୱଚ୍ଛ ଜଳଧାରଟିଏ ଭଳି ମୁହଁପୋତି ବହି ଯାଉଥିଲା ବାଣୀ। ବନ୍ଧ ପକାଇଲେ ଅଟକି ଯିବ-ମାହାରା କାଟି ଯୋଉ ଆଡ଼କୁ ନେଲେ, ସେ ଆଡ଼କୁ ବହିଯିବ। କିଛି ଦେଖିବା ତା'ର ଆବଶ୍ୟକ ନଥିଲା-କିଛି ଜାଣିବା ପାଇଁ ଆଗ୍ରହ ନଥିଲା। ସ୍ୱାମୀ, ଶାଶୁ, ବାପା ସମସ୍ତେ ତା'ର ଆପଣାର-ସମସ୍ତେ ତା'ର ଶୁଭାକାଂକ୍ଷୀ। ସେମାନେ ଯାହା କରିବେ-ଯାହା କହିବେ, ସବୁ ତା'ର ମଙ୍ଗଳ ପାଇଁ। କିନ୍ତୁ ହଠାତ୍ ମାଧବୀ ତା ଜୀବନ ପରିଧି ଭିତରକୁ ପଶିଆସି ଛାତି ଉପରେ ପଥର ଲଦି ଦେଲା।

-ପଡ଼ୋଶୀ ଲଳିତା ଦେବୀ କାନରେ ମନ୍ତ୍ର ଫୁଙ୍କିଲେ। 'ଶରତ ବାବୁ ନ ରାଗିଲେ ତୋ ରାଗ ବଢ଼ିବ କେମିତି ? ଆଉ ତୋ ରାଗ ନବଢ଼ିଲେ ଶରତ ବାବୁ ବାଟକୁ ଆସିବେ କେମିତି ?'

- ବାପା ଉପଦେଶ ଦେଲେ- 'ମୁଁ କହି ରଖୁଛି, ତୁ ଯଦି କଲ୍ୟାଣପୁରର ଝିଅ ହୋଇଥାଉ, ରାସବିହାରୀ ପଟ୍ଟନାୟକର ଝିଅ ହୋଇଥାଉ, ତେବେ ଏ ପିଲା ବୁଦ୍ଧି

ଛାଡ୍। କାନିରେ ଗଣ୍ଠି ପକେଇ ଆଜି ପଣ କର। ଯେମିତି ତୋ କଥାରେ ଶରତ ଉଠ୍ କହିଲେ ଉଠିବ, ବସ୍ କହିଲେ ବସିବ। ତୋ ମନ ଯେନି ଯଦି ସେ ନ ଚଳିଲା ତୁ କି ଘରଣୀ ହେବୁ ? ତୁ କି ଘର ଚଳେଇବୁ ?'

ସାତ କଥାରେ ସତୀ ଭୁଲେ। ସେମାନଙ୍କ କଥାରେ ବାଣୀ ଭଳି ଯାଇଥିଲା।

ସ୍ୱଚ୍ଛ ଜଳଧାର ଭିତରକୁ ପଶି ଆସିଲା ଗୁଡ଼ାଏ ଆବିଳ ଜଳ। ଉତ୍ଫଣ ନାଗୁଣୀ ଭଳି ସେ ଗର୍ଜ୍ଜିଲା-କମ୍ପିଲା। ବନ୍ଧବାଡ଼ ଆଉ ମାନିଲାନି। ମାଛିକୁ ମ ନକହିବା ଝିଅଟି ବଦଳି ଗଲା। ସ୍ୱାମୀକୁ ଉତ୍ତର ଦେଲା। ନିଜେ ଅଥୟ ହେଲା-ସମସ୍ତଙ୍କୁ ଅଥୟ କଲା।

ମାଧବୀ ଆସିଥିଲା ଦୃଢ଼ ଆତ୍ମପ୍ରତ୍ୟୟ ନେଇ। ବାଣୀକୁ ବୁଝାଇ ଦେବ- 'ଶରତ ବାବୁ ସଂପୂର୍ଣ୍ଣ ନିର୍ଦ୍ଦୋଷ। ତା ସହିତ ଶରତ ବାବୁଙ୍କର ଥରେ ମାତ୍ର ଦେଖା ହୋଇଛି ରାସ୍ତା ଉପରେ। ଆଉ କିଛି ସଂପର୍କ ନାହିଁ।' ସେ ଭାବିଥିଲା 'ବାଣୀ ବୁଝିବ। ତା ମୁହଁଟି ଲାଜରେ ଝାଉଁଳି ପଡ଼ିବ- ଫୁଟି ଉଠିବ ଦୟା କ୍ଷମା।' କିନ୍ତୁ ବାଣୀ ତାକୁ ଭର୍ତ୍ସନା କରିଥିଲା।

ବାଣୀ ସଂସାରରେ ନିଆଁ ଜଳୁଥିଲା। ଜ୍ୱଳନ୍ତ ଅଗ୍ନିରେ ସୁଖ ଶାନ୍ତି ଜଳିପୋଡ଼ି ପାଉଁଶ ହେଉଥିଲା। ଦିନେ ସ୍ୱାମୀ ସ୍ତ୍ରୀର ପବିତ୍ର ବନ୍ଧନକୁ ବାଣୀ ସ୍ୱାହା କରି ଦେଲା ସେଇ ଅଗ୍ନିରେ।

ରାତି ବାରଟା ହେବ ଶରତ ଫେରିଛି ଭଂକ ସାହିତ୍ୟ ଆସରରୁ। ବାଣୀର ବିଶ୍ୱାସ ଶରତ ଫେରିଛି ମାଧବୀ ଘରୁ।

ବିଶ୍ୱାସର ଆଲୋକ ଲିଭିଗଲେ ଅବିଶ୍ୱାସର କଳା ଛାଇ ମନ ଭିତରେ କମାଟ ବାନ୍ଧେ। ଶରତ ସ୍ପର୍ଶରେ ତା'ର କାୟା ଅପବିତ୍ର ହୋଇଛି। ରାତି ଅଧରେ ମୁଣ୍ଡ ଧୋଇ ଗାଧୋଇଛି ବାଣୀ, ମାତ୍ର କେଇ ତାଳ ପାଣିରେ ଜନ୍ମ ଜନ୍ମାନ୍ତରର ବନ୍ଧନକୁ ଅସ୍ୱୀକାର କରି। ଦିନେ ପବିତ୍ର ହୋମାଗ୍ନିକୁ ସାକ୍ଷୀ ରଖି ନିଜର ହୃଦୟକୁ ସ୍ୱାମୀ ନିକଟରେ ଅର୍ପଣ କରିଥିଲା। ଆଜି ସେଇ ସ୍ୱାମୀର ଅଂଗ ସ୍ପର୍ଶରେ ଅପବିତ୍ର ହୋଇଗଲା ! ଶଙ୍ଖା, ସିନ୍ଦୂର ତା ପାଇଁ ମୂଲ୍ୟହୀନ ହୋଇଗଲା। କେଉଁଠି ବଜ୍ରଟାଏ ପଡ଼ିଥିଲେ ଅବା ଶରତ ସହି ନେଇଥାନ୍ତା, କିନ୍ତୁ ଘୃଣାର ଏ ଉଲ୍ଲଙ୍ଗ ପ୍ରଦର୍ଶନ ତା ପକ୍ଷରେ ସହିବା ସମ୍ଭବ ନଥିଲା। ଶରାହତ ପଶୁ ଭଳି ଶରତ ପଳାଇଲା।

ସେଇ ରାତିରେ ଲଳିତା ଦେବୀଙ୍କ ଘରେ ପହଞ୍ଚି ଶରତ ଦେଖିଲା ନାରୀର ଏକ ବିକଟ ରୂପ।

ଲଳିତା ଦେବୀ ବେଦୀକୁ ଗଲାବେଳେ କାଳେ ଶହେଟା ଶଙ୍ଖ ବାଜିଥିଲା। ଶହେ ହୁଳହୁଳି ପଡ଼ିଥିଲା। ଦେଶ ବିଦେଶରୁ ଆସିଥିଲା ଅସଲି ଜଉର ବାରିକ୍ ଶଙ୍ଖା ଆଉ

ଲାଲ ଟକଟକ୍ ସୁବାସିତ ସିନ୍ଦୂର। ଲଳିତା ଦେବୀଙ୍କ ନିକଟରେ ଶଙ୍ଖା ସିନ୍ଦୂରର ଗର୍ବ ଥିଲା କିନ୍ତୁ ଗୌରବ ନଥିଲା। ସ୍ୱାମୀ ଘୁରି ବୁଲୁଥିଲେ ଆଉ ଜଣେ ତରୁଣୀ ସହିତ। ବ୍ୟର୍ଥ ଦାମ୍ପତ୍ୟ ଜୀବନର ହା ହା କାର ଭିତରୁ ଯେଉଁ ବିକଳ ମାନସିକତା ସୃଷ୍ଟି ହୋଇଥିଲା ତା'ର ପ୍ରତିଫଳନ ଘଟିଥିଲା ଛଳନାରେ-ବାଣୀର ସୁଖୀ ସଂସାରକୁ ଧ୍ୱଂସ କରିବାରେ ପୁଣି ଶରତକୁ ପ୍ରେମ ନିବେଦନ କରିବାରେ। ବାଣୀ ନିଜ ଆଖିରେ ଦେଖିଛି ଏ ବିଭତ୍ସ ଦୃଶ୍ୟ-କାନରେ ଶୁଣିଛି ଲଳିତାର ସ୍ୱୀକାରୋକ୍ତି। ପୁଣି ଦେଖିଛି ଲଳିତାର ପ୍ରେମ ନିବେଦନକୁ ପ୍ରତ୍ୟାଖ୍ୟାନ କରିବାରେ ଶରତର ଦୃଢ଼ତା।

ବାଣୀର ମୋହଭଙ୍ଗ ହୋଇଛି। ସନ୍ଦେହର କୁହେଳି ଅପସରି ଯାଇଛି। ଧୀରେ ଧୀରେ ଆତ୍ମପ୍ରକାଶ କରିଛି ବିଶ୍ୱାସର ନୂତନ ସୂର୍ଯ୍ୟ।

ତେଣେ ମାଧବୀ ଅପେକ୍ଷା କରିଛି ଗୋଟିଏ ସୁଦିନକୁ ଯେଉଁଦିନ ସେ ନାରୀତ୍ୱର ଉପଯୁକ୍ତ ମର୍ଯ୍ୟାଦା ପାଇ ଶଙ୍ଖା ସିନ୍ଦୂର ପିନ୍ଧିବ। ଯେଉଁଦିନ ବାଣୀ ସହିତ ତା'ର ପ୍ରଥମ ସାକ୍ଷାତ ହୋଇଥିଲା, ସେଦିନ ସେ କହି ରଖିଥିଲା-ବଜାରରୁ ଶଙ୍ଖା ସିନ୍ଦୂର ଆଣି ପିନ୍ଧିଥିଲେ ସେ ବହୁତ ଦିନ ଆଗରୁ ପିନ୍ଧି ପାରିଥା'ନ୍ତା। ଜୀବନରେ ଯଦି ଏ ଅଧିକାର ସେ ଦାବି କରେ ତେବେ ସେ ଅଧିକାର ବାଣୀ ତାକୁ ଦେବ।

ଉତ୍ତମ ଜାଣିଥିଲା ମାଧବୀ ଗଙ୍ଗୋଦକ ଭଳି ପବିତ୍ର- ଫୁଲ ଭଳି ନିଷ୍ପାପ। ସେଥିପାଇଁ ତା'ର ନାରୀତ୍ୱକୁ ମର୍ଯ୍ୟାଦା ଦେଇ ତାକୁ ବିବାହ କରିବାକୁ ସ୍ଥିର କରିଥିଲା। ବାଣୀ ନିଜେ ଯାଇଥିଲା ମାଧବୀକୁ ବୋହୂକରି ଆଣିବା ପାଇଁ। ମାଧବୀ ହାତରେ ଶଙ୍ଖା, ସିନ୍ଦୂର ପିନ୍ଧାଇ ଦେଉ ଦେଉ ନାଟକର ଶେଷ ଯବନିକା ନଇଁ ଆସିଥିଲା।

ମାଧବୀ ସହିତ ଶରତର ମୁହୂର୍ତ୍ତକର ସାକ୍ଷାତ। କେତେ ନଗଣ୍ୟ ଏ ଘଟଣା। ଅଥଚ ଏଇ ତୁଚ୍ଛ ଘଟଣାରୁ ଉଦ୍ଭବ ହୋଇଛି କାଳଜୟୀ ନାଟକ ଶଙ୍ଖା ସିନ୍ଦୂର।

ଗୋପାଳ ଛୋଟରାୟଙ୍କର ୧୯୫୫ ମସିହାର ରଚନା ୟେ'। ସଂଳାପରୁ, କଥା ଶିଳ୍ପରୁ, ହାସ୍ୟରସରୁ ତାଙ୍କ ନାଟକ ବାରି ହୋଇପଡ଼େ। ଓଡ଼ିଆ ନାଟ୍ୟ କୋଣାର୍କର ମହାନ୍ ଶିଳ୍ପୀ ସେ।

ମନ ଖୋଜୁଥିଲା ଏଇଭଳି ନାଟକଟିଏ। ମାସ କେଇଟି ପରେ ଏହାକୁ ମଂଚସ୍ଥ କଲୁ ଆମ ଗାଁରେ। ଏବେବି ବ୍ରହ୍ମଚାରୀର ସଂଳାପଟି ଲୋକେ ଭୁଲି ନାହାନ୍ତି। କଥା କଥାକେ କହନ୍ତି 'ଆମର ତ ମନ ଖୋଲା, ହୃଦୟ ନିର୍ମଳ ପକେଟ ଖାଲି।' ଏଇ ଛୋଟିଆ ସଂଳାପ ଭିତରେ ଲୁଚି ରହିଛି ପଲ୍ଲୀ ଜୀବନର ସରଳତା। ସେଥିପାଇଁ ମନେରହିଛି ଆଜିଯାଏଁ।

ଆଗରୁ କହିଛି ନାଟକ ଆରମ୍ଭ ହେବା ପୂର୍ବରୁ ଓଡ଼ିଶୀ ନାଚଟିଏ ଦେଖାଇବା ଆମ ପାଇଁ ଗୋଟିଏ ପରମ୍ପରାରେ ପରିଣତ ହୋଇ ଯାଇଥିଲା । ପୂର୍ବରୁ ନିତ୍ୟାନନ୍ଦ ଯାଇଥିଲା, କ୍ରମଶଃ ପ୍ରମିଳା, ଚାରୁ, ଉଷା ମଂଚରୁ ବିଦାୟ ନେଲେ । କଣ କରିବୁ ? ଓଡ଼ିଶୀ ନାଚ ଶିଖିଥିବା ପିଲାଟିଏ ଯୋଗାଡ଼ କରୁ । ଲୋକି ଭାଇ, ଭାସ୍କର ଭାଇନା ଆଉ ଆସୁ ନଥାନ୍ତି । ଆମ ଗାଁରେ କେହି ତବଲଚି ନ ଥାନ୍ତି । ଶେଷମୁହୂର୍ତ୍ତରେ ପାଖ ଗାଁର କେହି ଜଣେ ତବଲଚି ଆସନ୍ତି । ଝିଅଟି ବେଶ ପୋଷାକ ପିନ୍ଧି ଷ୍ଟେଜ୍‌ରେ ଠିଆ ହୁଏ । କିନ୍ତୁ ନାଚିବ କଣ ? ତବଲା ବାଣୀ ଠାଏ, ବାଦକର ପାଣି ଠାଏ, ଝିଅଟିର ଠାଣି ଠାଏ । ଝିଅଟି ବେଳେବେଳେ କ'ଣ କରିବ ଜାଣି ନପାରି ଠିଆ ହୋଇଯାଏ । ଅଥବା ମନକୁ ମନ ନାଚେ । ଗୋଟିଏ ଗୋଟିଏ ଝିଅ ଅପମାନରେ କର୍କରିତ ହୋଇ କାନ୍ଦନ୍ତି । ପୁଣି ପରବର୍ଷ ଆଉ ଜଣେ ଝିଅ-ଆଉ ଜଣେ ତବଲଚି, ପୁଣି ଯଥା ପୂର୍ବଂ ତଥା ପରଃ ।

ମୋତେ ନିଜକୁ ଅପମାନ ଲାଗିଲା । କୁଲା ଯୋଗୁଁ ତ ଆଉ ବାହାଘର ଅଟକିବ ନାହିଁ । ମୁଁ ପ୍ରଥମେ ଲଳିତ କଳାପୀଠ ଏବଂ ପରେ ଲକ୍ଷ୍ମଣ ନାୟକ ସଂଗୀତ ଏକାଡ଼େମୀରେ ନାଁ ଲେଖାଇଲି । ଜଣେ ବିଖ୍ୟାତ ତବଲା ବାଦକ ଶ୍ରୀ ସଚ୍ଚି କାନୁନ୍‌ଗୋ ଏଠାରେ ଶିକ୍ଷା ଦେଉଥିଲେ । ଭାରତ ପ୍ରସିଦ୍ଧ ତବଲା ବାଦକ ଜ୍ଞାନ ପ୍ରକାଶ ଘୋଷଙ୍କର ସେ ଛାତ୍ର । ତାଙ୍କ ଘରାନା ସ୍ୱତନ୍ତ୍ର । ଆଙ୍ଗୁଠି ଉପରେ ଅଧିକ ଚାପ ସୃଷ୍ଟି ନ କରିବାର ବିଜ୍ଞାନ ସମ୍ମତ ପ୍ରକ୍ରିୟାଟି ଏ ଘରାନାର ବିଶେଷତ୍ୱ । ମୋ ଭଳି ଅଧମ ଛାତ୍ର ଯେତେବେଳେ ଖଡ଼ିକି ହେଲା ନାହିଁ କି ପେଡ଼ିକି ହେଲାନାହିଁ, ସେତେବେଳେ ତାଙ୍କ ନାଁ ନେଇ ତାଙ୍କୁ ଅପଦସ୍ଥ କରୁଛି ।

ଦୁଇବର୍ଷ ତାଙ୍କଠାରୁ ଶିକ୍ଷା ଗ୍ରହଣ କରିବା ପରେ ମୋର ମୌଳିକ ଧାରଣା ହେଲା । ଓଡ଼ିଶୀ ନୃତ୍ୟରେ ସଂଗତ କରିବାରେ ଆଉ କିଛି ଅସୁବିଧା ହେଲା ନାହିଁ । ପୁଣି ବର୍ଷ ପରେ ବର୍ଷ ଧୁମ୍‌ଧାମ୍‌ରେ ଓଡ଼ିଶୀ ନାଚ ହେଲା । ଓଡ଼ିଶୀ ନାଚ ପରେ ମୁଁ ଆଉ ତବଲା ପାଖରେ ବନ୍ଦୀ ହୋଇ ରହେ ନାହିଁ । ଅନ୍ୟାନ୍ୟ କଥା ବୁଝେ । ପାଖ ଗାଁର ଯେଉଁ ତବଲଚିଙ୍କୁ ଡାକି ଆଣିଥାଉ ସେ ଅନ୍ୟାନ୍ୟ ଗୀତରେ ସଂଗତ କରନ୍ତି । ଅବଶ୍ୟ ମଝିରେ କେତେବେଳେ ଫୁରସତ୍ ମିଳିଲେ ମୁଁ ହାତ ସୁଖ କରିନିଏ ।

ସେ ବର୍ଷ ଆମେ ସାବତ ମା ମଞ୍ଚସ୍ଥ କରିବାକୁ ଯାଉଥାଉ । କମଳ ଲୋଚନ ମହାନ୍ତିଙ୍କର ଅନ୍ୟାନ୍ୟ ନାଟକ ତୁଳନାରେ ସାବତ ମା (୧୯୬୫)ର ଆବେଦନ ସ୍ୱତନ୍ତ୍ର । 'ସୁନ୍ଦରୀ' ଏ ନାଟକର ଗୋଟିଏ କ୍ଷୁଦ୍ର ଚରିତ୍ର କିନ୍ତୁ ସମାଜର ଅସହାୟ, ପରାଶ୍ରୟୀ ମହିଳା ମାନଙ୍କର ସାର୍ଥକ ପ୍ରତିନିଧି । ଏ ଚରିତ୍ର ମାନେ ଭିଡ଼ ଭିତରେ ବାରି ହୋଇ ପଡ଼ନ୍ତି । ସେମାନଙ୍କର ସ୍ୱପ୍ନ ରହିତ ଅଶ୍ରୁହୀନ ଡିମା ଡିମା ଆଖିରୁ ଅସହାୟତାର ପରିଭାଷା ପଢ଼ି ହୁଏ । ସେମାନଙ୍କ ଭୟ ଜଡ଼ସଡ଼ ମୁହଁ ଉପରେ

ଦୁର୍ଭାଗ୍ୟର ବଳିରେଖା ଗଣିହୁଏ। କୋଉଦିନ ସେମାନେ ଅକାଳରେ ଗଛରୁ ଝଡ଼ି ପଡ଼ି ଏଡ଼େ ବଡ଼ ସୁଅ ମୁହଁରେ ପଡ଼ିଲେ ହୁଏତ ତାଙ୍କର ଆଉ ମନେ ନାହିଁ, କୋଉଠି ପହଞ୍ଚିବେ ଜଣା ନାହିଁ ଅଥଚ ସମସ୍ତଙ୍କୁ ଆପଣେଇ ନେବାର ନିଶ୍ଚିତ ପ୍ରତିଶ୍ରୁତି ତାଙ୍କର ଚେହେରାରୁ ପଢ଼ିହୁଏ।

ମାନବିକ ଆବେଦନର ଉର୍ଜସ୍ୱଳ ଚିତ୍ରଟି ନବା ଆଉ ପୂର୍ଣ୍ଣ ଚରିତ୍ରରେ ଝଲସି ଉଠେ। ପ୍ରମିଳା ଚରିତ୍ରରେ ଫୁଟି ଉଠେ ସେଇ ସ୍ୱାର୍ଥପର ମଣିଷ ମାନଙ୍କର କଥା ଯେଉଁମାନେ ସମୁଦାୟ ପରିଧିକୁ ଅକ୍ତିଆର କରି ଅନ୍ୟ ସମସ୍ତଙ୍କୁ ପରିଧି ବାହାରକୁ ଠେଲି ଦିଅନ୍ତି।

ଚାରିତ୍ରିକ ଦ୍ୱନ୍ଦର ପରିଛନ୍ନ ରୂପ ସାବତ ମାର ସଫଳତାକୁ ବାଟ କଢ଼େଇ ନେଉଥିଲା।

ସେ ବର୍ଷ ଅନନ୍ତର ଶ୍ୱଶୁର ଆମ ଗାଁକୁ ପ୍ରଥମ ଥର ପାଇଁ ଆସିଥାନ୍ତି ତାଙ୍କ ଝିଅକୁ ଶଂଖୋଳିବାକୁ। ମୋତେ କହିଲେ ମୁଁ ପେଣ୍ଟିଂ କରିବି। କେଉଟ ଘର ବୋହୂ ଯେପରି ଗୋଟିଏ ହାତରେ ଧାନ ଖରଡ଼େ, ଆର ହାତରେ ଚୁଡ଼ା ଓଲଟାଏ, ସାନ ପିଲାଟିକୁ କୋଳରେ ଯାକି କ୍ଷୀର ଦିଏ। ଫୁରସତ ମିଳିଲେ ଚୁଲୀ ଭିତରକୁ କାଳ ଠେଲିଦିଏ ଅବା କାନ୍ଦୁରା ପିଲାକୁ ଥାପୁଡ଼ି ଦିଏ, ମୋର ଅବସ୍ଥା ସେଇଭଳି। ଏକ ସମୟରେ ଅନେକ କାମ କରିବାକୁ ପଡ଼େ। ମୋ ଉପରୁ ଗୋଟିଏ ଦାୟିତ୍ୱ ଗଲା। ଖୁସି ହେଲି। ଷ୍ଟେଜ୍‌ରେ ଯେତିକିଟା ଲାଇଟ୍ ଜଳିବ ସେତିକିଟା ଲଇଟ୍ ଗ୍ରୀନ୍ ରୁମ୍‌ରେ ରଖିବା ପାଇଁ ସେ ନିର୍ଦ୍ଦେଶ ଦେଲେ। ଏହାର ଆବଶ୍ୟକତା କଣ ମୁଁ ବୁଝି ପାରିଲି ନାହିଁ। ଆମେ ତ ଗୋଟିଏ ଲାଇଟ୍‌ରେ ଚଳାଇ ନେଉ। ସେ ମୋର ଶ୍ୱଶୁର ସ୍ଥାନୀୟ। କିଛି ଆଉ ନ ପଚାରି ଲାଇଟ୍ ବନ୍ଦୋବସ୍ତ କଲି।

କି ସୁନ୍ଦର ସେ ପେଣ୍ଟିଂ !

ପାଉଡ଼ର ଦେହରେ ଯେପରି ଅଭିନେତାର ଚରିତ୍ରକୁ ଗୋଳି ମୁହଁରେ ମାଖି ଦେଇଛନ୍ତି। ସେଇ ପିହୁଡ଼ି, ଜିଙ୍କ୍ ଅକ୍‌ସାଇଡ୍, ସିନ୍ଦୂରର ମିଶ୍ରଣ। ସେଇ ହାଲ୍‌କା କଳାଗାର। କିନ୍ତୁ ସେଥିରେ ଭରି ରହିଥିଲା ଶିଳ୍ପ ନୈପୁଣ୍ୟ। ଆଲୋକ ଓ ଦୂରତ୍ୱ ସହିତ ରଂଗର ଆପେକ୍ଷିକ ସଂପର୍କ ଜାଣିଥିଲି କିନ୍ତୁ ଅଭିନେତା ମୁହଁରେ ଏହାର ପ୍ରୟୋଗାତ୍ମକ ଦିଗଟି ସଂପର୍କରେ ମୋର ଧାରଣା ନ ଥିଲା। ଲାଇଟ୍ ସହିତ ପେଣ୍ଟିଂର କି ସଂପର୍କ ସେ ଦିନ ବୁଝିଲି-ଦେଖିଲି। କୃଷ୍ଣଦାସ ମୁଖର୍ଜୀଙ୍କ ପେଣ୍ଟିଂ ଦେଖିଥିଲୁ ଏବେ ଲକ୍ଷ୍ମୀଧର* ମଉସାଙ୍କ ପେଣ୍ଟିଂ ଦେଖିଲୁ। ଯେକୁ ଆରେକ ବଳିଆର। ପରେ ସେ କହିଲେ ଯେ ସେ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ସ୍ଥାୟୀ ପେଣ୍ଟର୍ ଥିଲେ।

---

* ଲକ୍ଷ୍ମୀଧର ନାୟକ - ହରିଦାଶ ପୁର।

ଏଣିକି ଗାଁରେ ଥିଏଟର ହେଲେ ତାଙ୍କ ପାଖକୁ ଖବର ଯାଏ-ସେ ବସିଲା ସ୍ଥାନରୁ ଉଠି ଆସନ୍ତି ।

ଆଉ କିଛି ଖୋଜିବାକୁ ନଥିଲା । ସବୁଥିଲା ଆମ ହାତ ପାଆନ୍ତାରେ । ପୁଣି କେଇଟି ବର୍ଷ ବିତିଗଲା । କିନ୍ତୁ ହଠାତ୍ ଆମ ମୁଣ୍ଡରେ ଆକାଶ ଛିଡ଼ି ପଡ଼ିଲା । ବିଶିଭାଇ ୧୯୬୫ରେ ଭଗିଭାଇ ୧୯୬୬ରେ ହାତ ଧରା ଧରି ହୋଇ ଆର ପୁରକୁ ଚାଲିଗଲେ । ସେମାନେ ସାଥିରେ ଥିଲେ ବଳ ଆସେ-ଦମ୍ଭ ଆସେ, ବିପଦ ଆପଦ ଅତିକ୍ରମ କରିବାକୁ ଉପାୟ ଦିଶେ । ଆମର ବଳ ଭାଙ୍ଗିଗଲା । ତଥାପି ଅମାନିଆଁ ମନକୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲୁ ।

* ସବୁକଥା ପରେ ଏକଇ ସତ୍ୟ
ଏ ଜୀବନ ଯାଏ ବହି
ଏକଇ ସତ୍ୟ ଏଇଯେ ଜୀବନ
ବାକି ସବୁ ମିଛ ସହୀ
ଫୁଲଫୁଟି ଗଲେ ଝଡ଼ି
ବୃନ୍ତେ ନୁହଇ ଧରି ।

ଏଣିକି ରବିଭାଇ ନିର୍ଦ୍ଦେଶନା ଦେଲେ । ବିକି ତାଙ୍କୁ ସାହାଯ୍ୟ କଲା । କଂସା କବାଟ, ଉଠା ପାଚେରୀ, ଖଇ କଉଡ଼ି, ବିଚାର, ବିଷ ପିୟୂଷ, ଶଙ୍ଖ ମହୁରୀ ମଞ୍ଚସ୍ଥ କଲୁ-ଆଗରୁ ଅଭିନୀତ ହୋଇଥିବା ନାଟକରୁ ଗୋଟିଏ ଗୋଟିଏ ସହିତ ।

ପ୍ରତିବର୍ଷ ଦୁଇ ତିନିକଣ ଅଭିନେତ୍ରୀ ଆସନ୍ତି । ଗାଁରୁ ଚାନ୍ଦା ଆଦାୟ ହୁଏ ତିରିଶି ଟଙ୍କା । ବ୍ୟକ୍ତିଗତ ଭାବରେ କିଛି କିଛି ଚାନ୍ଦା ଦେଉ । ଅନ୍ୟାନ୍ୟ ଖର୍ଚ୍ଚ ସରିବରି ହୋଇଯାଏ । କିନ୍ତୁ ଥିଏଟର ପରଦିନ ଅଭିନେତ୍ରୀଙ୍କୁ ବିଦାୟ ଦେବାକୁ ଆଉ ହାତରେ ପଇସା ନଥାଏ । ଚିତ୍ତ ସକାଳୁ ସକାଳୁ ଆସି ଆମ ଦୁଆରେ ହାଜର ହୁଏ । ମୁହଁରେ ଅସହାୟତାର ହସ । ସେ ହସିଲେ ତାଳୁରୁ ତଳିପାଯାଏଁ ନହକା ବେତ ଭଳି ହଲିଯାଏ ।

- କିରେ କଥା କଣ ?
- ଆଉ ପଇସା ନାହିଁ ।
- ଆଗରୁ କହିଲୁ ନାହିଁ ।
- କହିବି କ'ଣ ମୁଁ ଭାବିଥିଲି ଆଦାୟ ହେବ ବୋଲି ନା ।

ଆଉ ଉପାୟ ନଥାଏ । ଯୁବକ ସଂଘ ଟଙ୍କାରୁ କିଛି କିଛି ଦେଉ । ଏମିତି କେଇବର୍ଷ ଚାଲିଲା ।

---

* ରବାୟତ ଓମ୍‌ର ଖାୟମ୍- ଗୋପାଳ କାନୁନ୍‌ଗୋ ।

ଭଲି ଭଲି ସିନ୍ ଟାଣି ନାଟକ ମଂଚସ୍ଥ କରିବାର ଦିନ ଶେଷ ହୋଇ ଆସୁଥିଲା । ସତୀଶ ଚନ୍ଦ୍ର ସରକାର, କୃଷ୍ଣଦାସ ମୁଖର୍ଜୀଙ୍କର ସିନ୍ ଆଉ ଦେଖିବାକୁ ମିଳୁ ନଥିଲା । ହାତୀ ମହାରଣା କୁନା ମହାରଣାଙ୍କ ତିଆରି ସିନ୍ ଆମେ ବାଳକାଟି କିମ୍ବା ସୁନୁଗୋରଡ଼ିରୁ ଭଡ଼ାରେ ଆଣୁଥିଲୁ । ଖୁବ୍ ଗାଢ଼ ରଙ୍ଗର ସିନ୍ । ଘଡ଼ିଏ ଚାହିଁଲେ ଆଖି ଥକି ପଡୁଥିଲା । ସେ ସିନ୍ ବି ଆଉ ଦେଖିବାକୁ ମିଳିଲା ନାହିଁ । ଗୋଟିଏ ବର୍ଷ ଏପରି ହେଲା ଗୋଟିଏ କୋଉଠୁ ସିନ୍ ମିଳିଲା ନାହିଁ । ମୋର ବଂଧୁ ଶ୍ରୀ ନାରାୟଣ ବ୍ରହ୍ମାଙ୍କ ପାଖରେ ଚିରା ଫଟା ସିନ୍ କେଇଟି ଥିଲା । ସେଥିରେ କାମ ଚଳାଇଲୁ । ପେଣ୍ଟରଟିଏ ଆସିଲେ କଳା ସ୍କ୍ରିନ୍ କେଇଟି ଧରି ଆସେ । ପଚାରିଲେ କହେ ଆଉ କଣ କୋଉଠି ସିନ୍ ଟଣା ହେଉଛି ?

ଆଗରୁ ଷ୍ଟେଜ୍‌ର ଶେଷରେ ଗୋଟିଏ ଗୋଟିଏ ସେଟିଂ କରୁଥିଲୁ । ଆଉ ସବୁ ଦୃଶ୍ୟ ପାଇଁ ସିନ୍ ବ୍ୟବହାର କରୁଥିଲୁ । ବେଳେବେଳେ ଦୁଇଟି ସେଟିଂ ମଧ୍ୟ କରୁ । କିନ୍ତୁ ସମୁଦାୟ ନାଟକଟି ସେଟିଂରେ କରିବାର ଆର୍ଥିକ କ୍ଷମତା ଆମର ନ ଥିଲା । ତେଣୁ ଅଧିକାଂଶ ଦୃଶ୍ୟ ପାଇଁ କଳା ପରଦା ବ୍ୟବହାର କରିବା ଭିନ୍ନ ଆମର ଆଉ ଅନ୍ୟ ଉପାୟ ନଥିଲା ।

ଏହି ସମୟରେ ଖଲିକୋଟ କଳା ମହାବିଦ୍ୟାଳୟରୁ ଦ୍ୱିତୀୟ ବ୍ୟାଚ ଉତ୍ତୀର୍ଣ୍ଣ ହୋଇ ଭୁବନେଶ୍ୱର ଆସିଥାନ୍ତି । ସେମାନଙ୍କ ମଧ୍ୟରେ ଥାନ୍ତି ସଂପ୍ରତି ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ କଳାକାର ଡ଼ଃ ଦୀନନାଥ ପାଠୀ, ନିରଞ୍ଜନ ନାୟକ ଓ ଚନ୍ଦ୍ରଶେଖର ରାଓ । ସେମାନଙ୍କ ସହିତ କ୍ରମେ ମୋର ଘନିଷ୍ଠତା ବଢ଼ିଲା । ନିରଂଜନ ନାୟକଂକୁ ଅନୁରୋଧ କଲି କେତୋଟି ସିନ୍ ତିଆରି କରିବା ପାଇଁ । ସେ ରାଜି ହେଲେ । ଗୋଟିଏ ରାଜପଥ ସିନ୍ ସେ ପ୍ରଥମେ ତିଆରି କଲେ- ମାତ୍ର ଦୁଇଟି ରଂଗ ବ୍ୟବହାର କରି-ଘନନୀଳ, ଧଳା । ସାଧାରଣତଃ ରାଜପଥରେ ୪/୫ ପ୍ରକାର ରଂଗ ବ୍ୟବହାର କରାଯାଉ ଥିଲା । କିନ୍ତୁ ଏ ସିନ୍‌ଟି ଖୁବ୍ ସୁନ୍ଦର ହୋଇଥିଲା । ବମ୍ବେର କୌଣସି ଏକ ସୁଦୃଶ୍ୟ ରାଜପଥକୁ ମଡେଲ ରୂପେ ବ୍ୟବହାର କରିଥିଲେ । ସିନ୍‌ଟି ତାଙ୍କଠାରୁ ନେଇ ଆସିଲି । ମାସକ ପରେ ତାଙ୍କୁ ଖୋଜିଲା ବେଳକୁ ସେ ଆଉ ଭୁବନେଶ୍ୱରରେ ନାହାନ୍ତି । ତାଙ୍କ ଘରୁ ଶୁଣିଲି ସେ ବାବାଜୀ ହୋଇ ଚାଲି ଯାଇଛନ୍ତି । ଘରେ ତାଙ୍କର ଠିକଣା କାହାକୁ କଣା ନାହିଁ । ଆଉ ଉପାୟ ନାହିଁ । ପରବର୍ଷ ରଜବେଳକୁ ନିଜେ ସିନ୍ ଜରିବା ଆରମ୍ଭ କଲି । ରଜ ଆଉ ଦିନେ ଅଛି, ସେଇ ପେଣ୍ଡାଲ ଉପରେ ଗୋଟିଏ ସିନ୍ ଚିତ୍ର କରୁଛି, ଶେଷ ହେବାକୁ ଆଉ ଅଳ୍ପ ବାକି ଥାଏ ଉଦୟନାଥ ଦାଦି ଆସି ପହଞ୍ଚିଲେ । ତାଙ୍କୁ ରଂଗ ତୁଳୀ ବଢ଼ାଇ ଦେଇ, ସିନ୍‌ର ଝର୍ଣା ଉପରେ ଗୋଟିଏ ସିନେରି ଆଙ୍କି ଦେବାକୁ କହିଲି । ମାତ୍ର ୧୫ ମିନିଟ୍ ଭିତରେ ଗୋଟିଏ ସୁନ୍ଦର ଦୃଶ୍ୟ ଝଲସି ଉଠିଲା । କେଜାଣି ଘଣ୍ଟାଏ ଭିତରେ ମୁଁ ଏପରି ସୁନ୍ଦର ଚିତ୍ରଟିଏ କରିପାରିଥାନ୍ତି ଅବା ।

ସେତେବେଳକୁ ସାଂସ୍କୃତିକ ପ୍ରାଣ କେନ୍ଦ୍ର ହୋଇ ଉଠିଥାଏ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପ। ଭୁବନେଶ୍ୱରରେ ଗଢ଼ି ଉଠିଥାଏ ଗୋଟି ଗୋଟି ହୋଇ ଅନେକ ନାଟ୍ୟ ସଂସ୍ଥା। ଆଜି ଯଦି ଗିରୀଶ କନ୍ନଡ଼ଙ୍କ 'ହୟବଦନ' ମୁହଁ କାଢିଲାଣି ତ କାଲି ଶୁଭିଲାଣି ବୈଷ୍ଣବ ପାଣିଙ୍କ ଗୀତି ନାଟ୍ୟର ମନ ମତାଣିଆ ସ୍ୱର। ପୁଣି କେତେବେଳେ 'ଦୁଇଟି ସୂର୍ଯ୍ୟଦଗ୍ଧ ଫୁଲ' ଜୀବନ ଯନ୍ତ୍ରଣାର ଗାଥା ଶୁଣାଇଲାଣି ତ ମୁହଁରୁ ଅଳନ୍ଧୁ ପୋଛି ପାଦ ପ୍ରଦୀପ ନିକଟରେ ଠିଆ ହେଲେଣି ପାରମ୍ପରିକ ନାଟକର ଗୋପ ଚୌଧୁରୀ, 'ମହିଆ' ମାନେ। ଫ୍ରେଣ୍ଡସ୍ ଚାରିଟି କ୍ଲବର ସ୍ୱର୍ଣ୍ଣଲଙ୍କାର ଆଡମ୍ବରପୂର୍ଣ୍ଣ ସାଜସଜ୍ଜା କେତେବେଳେ ଆଖି ଝଲସାଇଲାଣି ତ ସୃଜନୀର ମୃଗୟା ଦର୍ଶକଙ୍କ ହୃଦୟକୁ ଆନ୍ଦୋଳିତ କଲାଣି।

କେତେ ନାଟକ !

କେତେ ନିର୍ଦ୍ଦେଶକ !

କେତେ ସ୍ୱାଦର ନାଟକ !

ପୁଣି, ଅସୀମ ବସୁଙ୍କର କଳ୍ପନାର ପକ୍ଷୀଟି ଡେଣା ମେଲାଇ, ଉଡ଼ିଯାଏ କାହିଁ କେତେ ଦୂରକୁ ରଂଗ ତୁଳୀର କାଉଁରୀ ସ୍ପର୍ଶରେ। ଲେଖି ବସିଲେ ପୋଥିଟିଏ ହେବ।

ଶକୁନ୍ତଳାକୁ ଲକ୍ଷ୍ୟ କରି ଗୋଥେ କହିଥିଲେ-

Wouldst the earth and heaven it self
in one sole name combine
I name thee, o, Sakuntala !
and all at once is said.

ସ୍ୱର୍ଗ ଓ ଭୂଲୋକର ଐଶ୍ୱର୍ଯ୍ୟ ଯଦି ଏକାବେଳକେ ପାଇବାକୁ ଇଚ୍ଛା କର ତେବେ ଶକୁନ୍ତଳା ପାଠ କର। ପାଇ ପାରିବ। ଠିକ୍ ସେହିପରି କୁହାଯାଇ ପାରିବ ଯଦି ସବୁ ଯୁଗର, ସବୁ ସ୍ୱାଦର ଓଡ଼ିଆ ନାଟକ ଦେଖିବାକୁ ଚାହଁ- ଯାଅ- ରବୀନ୍ଦ୍ର ମଣ୍ଡପ ଦେଖି ଆସ। ପ୍ରବହମାନ ସମୟ କିପରି ନାଟକର ସର୍ବକାଳୀନ ଆବେଦନକୁ କ୍ଷୁଣ୍ଣ କରି ନାହିଁ ଯଦି ଅନୁଭବ କରିବାକୁ ଚାହଁ, ରବୀନ୍ଦ୍ର ମଣ୍ଡପ ବୁଲିଆସ। ଗାଁ ପିଲାଂକୁ ଡାକେ। ତାଙ୍କ ପାଇଁ ନିମନ୍ତ୍ରଣ ପତ୍ର କିମ୍ବା V.I.P. ପାସ୍ ପଠାଏ। ଖବର ଦିଏ, ଆରେ ରବୀନ୍ଦ୍ର ମଣ୍ଡପ ଆସ- ସାର୍ଥକ ସୃଷ୍ଟି ଦେଖିଯାଅ। କିଛି ଶିଖ। ଅଳସୁଆ ମାନେ ଆସନ୍ତି ନାହିଁ।

ଇତି ମଧ୍ୟରେ ବିଜି ନିର୍ଦ୍ଦେଶନା ଦେବାକୁ ଆରମ୍ଭ କଲା। ତା ନିର୍ଦ୍ଦେଶନାରେ ଝାର ବଉଳ, ସମାଧି, ଏମିତି ବି ହୁଏ ବେଶ୍ ସଫଳତା ଲାଭ କଲା।

୧୯୭୬ ମସିହା। ସେ ବର୍ଷ ଆମେ ପରିଶୋଧ ନାଟକ ମଂଚସ୍ଥ କଲୁ। ଭଞ୍ଜ କିଶୋର ପଟ୍ଟନାୟକ ଓ ସାରଦା ପ୍ରସନ୍ନ ନାୟକଙ୍କର ପରିଶୋଧ ଗୋଟିଏ ଅସଫଳ

ପ୍ରେମର ଇତିବୃତ୍ତ। ଶୈଶବର ବୋହୂ ବୋହୂକା ଖେଳରୁ ଯେଉଁ ସ୍ୱପ୍ନ ସୃଷ୍ଟି ହୋଇଛି, ବାସ୍ତବତାର ସଂଘାତରେ ତା'ର କରୁଣ ପରିଣତି ରୂପାୟିତ ହୋଇଛି ନାଟକରେ।

ଶୈଶବର ବାଲିଘର, ବୋହୂବୋହୂକା ଖେଳ ଆଦ୍ୟ କୈଶୋରରେ ସ୍ୱପ୍ନ ଭଳି ଭୁଲି ହୋଇଯାଏ। କିନ୍ତୁ ପିଲାଦିନର ସେଇ ଅନୁରାଗ ଦୁଶ୍ଛେଦ୍ୟ ଗ୍ରନ୍ଥିରେ ଆବଦ୍ଧ ହୋଇ ରହି ଯାଇଥିଲା ରାଜୁ ଆଉ ଲୀଳାର ମନ ତଳେ। ଲମ୍ବା ଛୁଟିଟିଏ ପାଇଲେ ରାଜୁ ଧାଇଁ ଆସୁଥିଲା ଗାଁକୁ ଲୀଳାକୁ ଆଖି ପୂରାଇ ଦେଖିନେବା ପାଇଁ- ସ୍ୱପ୍ନକୁ ସାକାର କରିବାର ଅନୁଚ୍ଚାରିତ ପ୍ରତିଶ୍ରୁତି ନେଇ। ସ୍କୁଲ ଶିକ୍ଷକର ଝିଅ ଲୀଳା। କିପରି ବିଶ୍ୱାସ କରିବ ଯେ ଏତେବଡ଼ ବୁନିଆଦି ପରିବାର ତାକୁ ବୋହୂ କରିନେବ ? ଆଶା ଆଶଙ୍କାର ଅନ୍ଧାର ଆଲୁଅ ଭିତରେ ରାଜୁର ଦୃଢ଼ତା କିନ୍ତୁ ଧ୍ରୁବ ତାରାର ଭରସା ଦେଇଥିଲା ଲୀଳାକୁ। ସେଇ ବିଶ୍ୱାସରେ ଦିନେ ରାତି ଅଧରେ, ଲୀଳା ଘର ଅଗଣାରେ ଚଉରା ମୂଳେ ଦୁହେଁ ବିବାହ ବନ୍ଧନରେ ଆବଦ୍ଧ ହେଲେ। ସେତେବେଳେ ଶଙ୍ଖଟିଏ ବାଜିବାର ବା ହୁଳହୁଳିଟିଏ ପଡ଼ିବାର ସୁବିଧା ନଥିଲା, ବାପା ଉମାଶଙ୍କରଙ୍କ ଡରରେ। ଦିନ କେଇଟି ଲୀଳା ସାଥିରେ ଲୁଚି ଛପି କଟେଇ ରାଜୁ ପୁଣି ଫେରି ଆସିଥିଲା କଟକ। କଣ୍ଟ ଦେଇଥିଲା ଚରିମାସ ପରେ-ପରୀକ୍ଷା ସରିଲେ ଫେରିବ।

ଏତେବଡ଼ ଘଟଣାଟା ଏଡ଼େ ବକଟେ ଗାଁରେ ଲୁଚନ୍ତା କିପରି ? କଥାଟା କାନ୍‌କୁ କାନ ହୋଇ ପାଞ୍ଚ କାନ, ଶେଷରେ ଉମାଶଙ୍କର ବାବୁଙ୍କ କାନ ହେବାକୁ ବେଶି ସମୟ ଲାଗି ନ ଥିଲା। ଜମିଦାରୀ ଯାଇଥିଲା, ପତିଆରା ଯାଇ ନଥିଲା। ଉମାଶଙ୍କର ବାବୁଙ୍କ ଆହତ ଅହଂକାର ଜାନ୍ତବ ହିଂସ୍ରତାରେ ରାମ୍ପି ବିଦାରି ତାଙ୍କୁ କ୍ଷତାକ୍ତ କରୁଥିଲା। ଏ ବିବାହକୁ ଅସ୍ୱୀକାର କରି ସେ ସନ୍ତୁଷ୍ଟ ନଥିଲେ। ସେ ଚାହୁଁଥିଲେ ରାଜୁ ପୁଣିଥରେ ବିବାହ କରୁ ତାଙ୍କରି ଭଳି ଗୋଟିଏ ଅଭିଜାତ ପରିବାରରେ। ସେଥିପାଇଁ ଗାଁ ପୋଷ୍ଟ ଅଫିସରୁ ଲୀଳା ଆଉ ରାଜୁର ଚିଠି ସବୁ ହାତେଇ ତାଙ୍କ ଭିତରେ ସୃଷ୍ଟି କରିଥିଲେ ଦୁର୍ଲଂଘ୍ୟ ପାଚେରୀ- ପୁଣି ରାଜୁ ମନରେ ଲୀଳା ପ୍ରତି ଅବିଶ୍ୱାସ-ସେ କୁଆଡ଼େ ସାରଥିର ସନ୍ତାନକୁ ଗର୍ଭରେ ଧରି ପତିତା।

ସବୁ ସହି ହୁଏ-ସ୍ତ୍ରୀର ଅସତୀ ପଣିଆ ସହି ହୁଏ ନାହିଁ। ମାସ ମାସ ଧରି ଲୀଳା ଠାରୁ ଚିଠି ନ ପାଇବାର କାରଣ ଖୋଜୁ ଥିଲା ରାଜୁ। ଏବେ ସବୁ କଥା ସ୍ପଷ୍ଟ ହୋଇଗଲା। ଲୀଳା ତାକୁ ବିଶ୍ୱାସରେ ବିଷ ଦେଇଛି-ପ୍ରତାରିତ କରିଛି-ସାରଥିର ସନ୍ତାନକୁ ଗର୍ଭରେ ଧରିଛି।

ଅପରାହ୍ନର ଛାଇଭଳି ଦିନଗୁଡ଼ିକ ଲମ୍ବି ଯାଉଥିଲା ଲୀଳା ପାଇଁ। ରାଜୁ ଗଲାବେଳେ ଦିନେ ଛାଡ଼ି ଦିନେ ଚିଠି ଲେଖିବାକୁ କହିଯାଇ ଥିଲା। ସେଥିରେ ଲୀଳା

ହେଳା କରି ନଥିଲା । ରାଜୁ କିନ୍ତୁ ପାଷାଣ ପାଲଟି ଯାଇଥିଲା । ଚିଠି ଖଣ୍ଡେ ଲେଖୁ ନଥିଲା । କାଉଟା ବି ଦାଉ ସାଧୁଥିଲା । ମୁଠି ଚାଉଳକୁ ଚାହୁଁ ନଥିଲା । ଥଣ୍ଟ ମାରିଥିଲେ ଅବା ରାଜୁ ସର୍ବ ଶୁଭରେ ଅଛି-ଚିଠି ଆସୁଛି ବୋଲି ସାନ୍ତ୍ୱନା ମିଳିଥାନ୍ତା ! ରାଜୁକୁ ଥରେ ଦେଖା କରି ଅସ୍ଥିର ମନକୁ ବୁଝାଇ ଦେବାପାଇଁ ସାରଥି ସାଥିରେ କଟକ ଆସିଥିଲା ଲୀଳା । ରାଜୁ କିନ୍ତୁ ଦେଖାଦେଲା ନାହିଁ । ସାରଥିକୁ ସିଧା ସିଧା କହିଦେଲା- 'ଲୀଳା ଗୋଟାଏ ବେଶ୍ୟା ।' ଦେଖା ହୋଇଥିଲେ କେଜାଣି ରାଜୁ ତୁଣ୍ଡରୁ ଏ ବିକଟ ବିଭତ୍ସ ଅପବାଦ ଶୁଣି, ଲୀଳାର ଛାତି ଫାଟି ଯାଇଥାନ୍ତା । ଗାଁକୁ ଆଉ ଫେରିବାକୁ ତା'ର ସାହସ ପାଇଲା ନାହିଁ । କୋଉ ମୁହଁ ନେଇ ସେ ଗାଁକୁ ଫେରିଥାନ୍ତା ?

ଆଉ କେହି ନୁହେଁ, ନିଜ ବାପା ତୁଣ୍ଡରୁ ରାଜୁ ଯେତେବେଳେ ଶୁଣିଲା ଯେ ଲୀଳା ନିର୍ଦ୍ଦୋଷ-ବାପା ଚକ୍ରାନ୍ତ କରି ତା ମନକୁ ବିଷାକ୍ତ କରିଛନ୍ତି, ସେତେବେଳକୁ ଅନେକ ବିଳମ୍ବ ହୋଇ ସାରିଥିଲା । ସେ ବିବାହ କରି ସାରିଥିଲା ପୁଷ୍ପିତାକୁ ।

ରାଜୁର ବିବାହ ସମ୍ବାଦ ଲୀଳା ପାଖରେ ପହଞ୍ଚିବାକୁ ବେଶି ବିଳମ୍ବ ହୋଇ ନଥିଲା । ଲୀଳାର ସବୁ ବନ୍ଧନ ତୁଟି ଗଲା । କିନ୍ତୁ ମୁଣ୍ଡ ଉପରେ ଦୁଇ ଦୁଇଟା ବୋଝ । ଗୋଟିଏ ନବଜାତ ପୁଅ ଏବଂ ଅନ୍ୟଟି ପ୍ରେମ ଆଉ ପ୍ରଣୟର ଋଣ ଭାର । ଯାକୁ ମୁଣ୍ଡରେ ବୋହି ସେ ଯିବ କୁଆଡ଼େ ? ମରଣ ବି ବାଟ ଓଗାଳି ଠିଆ ହେବ ।

ସେ ଦିନ ସୁନିଆଁ । ମେଘ ଥମଥମ ଆକାଶରୁ ବର୍ଷା ଝରୁଥିଲା । ନବଜାତ ଶିଶୁ ଏବଂ ଖଣ୍ଡିଏ ଚିଠି ରାଜୁର ଘର ଭିତରେ ରଖି ଦେଇ ଯେମିତି ଝଡ଼ ଭଳି ଆସିଥିଲା ସେମିତି ଝଡ଼ ଭଳି ଫେରିଗଲା ଲୀଳା । ଚିଠିରେ ଅଭିମାନ ନଥିଲା, ଅନୁଶୋଚନା ନଥିଲା, କ୍ରୋଧ ନଥିଲା । ଥିଲା ରାଜୁର ବୈବାହିକ ଜୀବନକୁ କଣ୍ଟକିତ ନ କରିବାର ନିର୍ଭର ପ୍ରତିଶ୍ରୁତି । ଆଉ ସେଇ ଚିଠିରୁ ପଢ଼ି ହେଉଥିଲା ଅନୁଚ୍ଚାରିତ, ଅଲିଖିତ ଅନେକ ଅନେକ ବ୍ୟଥାର କାହାଣୀ ।

-ଆଃ, ଥରଟିଏ ପାଇଁ ଭଲା ଲୀଳା ସହିତ ରାଜୁର ଦେଖା ହୋଇଥାନ୍ତା କି ! ଆଖି ଲୁହରେ ଲୀଳାର କଳଙ୍କ ପୋଛି, ଗ୍ଲାନି ଧୋଇ ତାକୁ କୁଳବଧୂର ସମ୍ମାନ ଦେଇଥାନ୍ତା । ପୁଷ୍ପିତା ଆପତ୍ତି କରି ନଥାନ୍ତା ।

- କିନ୍ତୁ ଲୀଳା ସେଠି ବି ନଥିଲା ।

କେଜାଣି ଅବା ଲୀଳା ତାକୁ ଅପେକ୍ଷା କରିଥିବ ସେଇ ନଈ କୂଳରେ ଯାହାର ପବନରେ, ପାଣିରେ, ଗଛପତ୍ରରେ ସେମାନଙ୍କ ପ୍ରେମର ଇତିହାସ ପଢ଼ିହୁଏ ।

- ଲୀଳା ସେଠି ବି ନଥିଲା ।

ଟିକିଏ ଆଗରୁ ବଢ଼ନ୍ତା ନଈ ସୁଅରେ ନିଜକୁ ଭସାଇ ଦେଇଥିଲା ଲୀଳା ।

ସାଧାସିଧା ପ୍ରେମ କାହାଣୀଟିଏ। କିନ୍ତୁ ନିର୍ମାଣ ଶିଳ୍ପରେ ଥିଲା ନାଟକୀୟତା। ଘଟଣା ପ୍ରବାହ ବାରମ୍ବାର ପରିଣତି ଆଡ଼କୁ ଆଗେଇ ପୁଣି ବାଟ ଭାଙ୍ଗି ଅନ୍ୟବାଟ ଧରୁଥିଲା। ତେଣୁ ସଫଳତା ଏହାର ଆଗେ ଆଗେ ଧାଉଁଥିଲା।

ନାଟକରେ ଗୋଟିଏ ଦୃଶ୍ୟ ଥିଲା-ଚାଳ ଉପରେ କାଉଟିଏ ବସି କା କା ରାବୁଛି। ଲୀଳା ଗୋଟିଏ କୁଲେଇରୁ ଆଣି ଚାଉଳ ମୁଠା ମୁଠା ଥୋଉଛି। ଆଶା, କାଉ ଆସି ଚାଉଳ ଖୁମ୍ପିଲେ ରାଜୁ ଠାରୁ ଚିଠି ଆସିବ ପରା ! କିନ୍ତୁ କାଉ ଆସି ନାହିଁ କି ଚାଉଳ ଖୁଣ୍ଟି ନାହିଁ। କା କା କରି ଉଡ଼ି ଚାଲି ଯାଇଛି। ଏଇ ଦୃଶ୍ୟଟିକୁ ସୁନ୍ଦର ଭାବେ ରୂପାୟିତ କରିଥିଲା ରାମ।

ପରିଶୋଧ ନାଟକ ଯେଉଁଠି ଶେଷ ହୋଇଛି-ସଙ୍କାଳି ନାଟକ ସେହିଠାରୁ ଆରମ୍ଭ ହୋଇଛି। ତା' ପରବର୍ଷ ଏହାକୁ ମଞ୍ଚସ୍ଥ କଲୁ। ସେବର୍ଷ ମନୋଜ ଆସିଲା ନିର୍ଦ୍ଦେଶନା ଦେବାକୁ। ଆମ ମଂଚ ସହିତ ସେ ପିଲାଦିନରୁ ସଂପୃକ୍ତ। ପୁଣି ତା'ର ନିର୍ଦ୍ଦେଶନାରେ କିଛି ନୂତନତ୍ୱ, କିଛି କଳାତ୍ମକତା ଅଛି। ବିକି ଭୁବନେଶ୍ୱରରୁ ଜଣେ ଭାଓଲିନ୍ ବାଦକ ନେଲା। ଦର୍ଶକମାନେ ନାଟକରେ କିଛି ନୂତନତ୍ୱର ସ୍ୱାଦ ଅନୁଭବ କଲେ।

ଉଷା ଆମ ମଂଚରେ କଳାକାର ଥିଲା। ତାର ସ୍ୱାମୀ ରବିବାବୁ* ଜଣେ ଭଲ ନିର୍ଦ୍ଦେଶକ। ସେ କେଇବର୍ଷ ଆସି ନିର୍ଦ୍ଦେଶନା ଦେଲେ।

ଆମ ଅଂଚଳରେ କେନାଲ ଖୋଳାହୋଇ ଖରାଟିଆ ଧାନ ଫସଲ ଆରମ୍ଭ ହେଲା। ଚାଷୀଙ୍କୁ ଆଉ ରଜବେଳେ ଫୁରସତ୍ ମିଳିଲା ନାହିଁ। ଗାଁରେ ମଧ୍ୟ ଅନେକ ସରକାରୀ ଚାକିରି କଲେ। ରଜକୁ ଦୁଇଦିନ ଛୁଟି ଏଥିରେ କି ନାଟକ ହେବ ? ତେଣୁ ବାଧ୍ୟ ହୋଇ ରଜ ପରିବର୍ତ୍ତେ କୁମାର ପୂର୍ଣ୍ଣିମାକୁ ନାଟକ କରିବାକୁ ସ୍ଥିର କଲୁ। କୁଆଁର ପୁନେଇଁ ଆଠ ଦିନ ଆଗରୁ ଝିଅ ପିଲାମାନେ ଏକାଠି ହୋଇ ରାତି ଶେଷ ପହର ପର୍ଯ୍ୟନ୍ତ ଖେଳନ୍ତି। ସେମାନେ ଖୁବ୍ ଅସନ୍ତୁଷ୍ଟ ହେଲେ, ଆଉ ତ ଉପାୟ ନଥିଲା କରିବୁ କଣ ? ରଜରେ ଏଣିକି ମୋର ଶଳା ଓ ପୁତୁରାମାନେ ତାଙ୍କ ଗାଁ ସାଗୁଆରେ ଗୋଟିଏ ଗୋଟିଏ ଗୀତିନାଟ୍ୟ ଖୋଲା ମଂଚରେ ମଂଚସ୍ଥ କରିବାକୁ ଲାଗିଲେ। ମୁଁ ଯାଇ ତାଙ୍କ ସହିତ ମିଶିଯାଏ। ରଜଟା ଆଉ ଖାଁ ଖାଁ ଲାଗେ ନାହିଁ।

ଗୀତି ନାଟ୍ୟ ଯେତେବେଳେ ଶେଷ ଶଯ୍ୟାରେ ଶୋଇ ଯାଇଥିଲା କଟକ ଆକାଶବାଣୀ କଳାକାରଙ୍କ ଅମୃତ ସ୍ପର୍ଶରେ ଜୀବନ ପାଇ ଚିହିଁକି ଉଠିଲା। କୋଉ ଦିନରୁ ହଜି ଯାଇଥିବା ଅମୂଲ୍ୟ ରତ୍ନଟି ହାତ ପାଆନ୍ତାକୁ ଆସିଗଲା। ମୁକ୍ତାକାଶ ରଂଗମଂଚରେ ବିଗୁଲ ବାଜିଲା, ଜରିଦିଆ ପୋଷାକ ପିନ୍ଧି କର୍ଣ୍ଣ ଅର୍ଜୁନମାନେ ଅବତୀର୍ଣ୍ଣ

* ରବୀନ୍ଦ୍ର କୁମାର ମହାନ୍ତି- ଦଳଭାଣ ପୁର

ହେଲେ। ହଜିଲା ଅତୀତ ଫେରି ଆସିଲା। ମଂଚ ନାଟକ ବଂଚିବା ପାଇଁ ସଂଗ୍ରାମ କରୁଥିବା ବେଳେ ଗୀତିନାଟ୍ୟ ସଫଳତା ଲାଭ କଲା। ଗାଁ ଗହଳି ସହର ବଜାରର ସୌଖୀନ ମଂଚରେ ଗୀତିନାଟ୍ୟର ଯମୁନା କୂଳ ଲଂଘି ବହି ଚାଲିଲା।

ଖୋଲା ମଂଚ ସହିତ ଆମର ଅଭିନେତା ମାନେ ଅଭ୍ୟସ୍ତ ନୁହଁନ୍ତି। ଯାତ୍ରା ପ୍ରତି ଲୋକଙ୍କର ଅଭିରୁଚି ନାହିଁ। ଲୋକ ନାଟ୍ୟର ଏହି ମହାନ୍ ବିଭବଟି ତେଣୁ ଆମ ହାତରୁ ଚାଲିଗଲା। କିନ୍ତୁ ପ୍ରାୟ ପାଞ୍ଚ ବର୍ଷ ଧରି ସାଗୁଆରେ ଯେଉଁ ଗୀତି ନାଟ୍ୟ ଅଭିନୀତ ହେଲା ସେଥି ସହିତ ନିଜକୁ ସଂଶ୍ଳିଷ୍ଟ କରି ଏହାର ପୂର୍ଣ୍ଣ ସ୍ୱାଦ ଉପଭୋଗ କଲି।

ଏଇ କେତେବର୍ଷ ହେବ ଗୀତି ନାଟ୍ୟର ଆଉ ଆଦର ନାହିଁ। ସମୟ କେତେ କଣ ଚାଟିଚୁଟି ସଫା କରୁଛି କିଏ କହିପାରିବ ?

୧୯୯୬ ମସିହାରେ ମୁଁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ସାଂସ୍କୃତିକ ସଂସଦର ସଭାପତି ଥିବା ସମୟରେ ଆନ୍ତଃ ବିଭାଗୀୟ ନାଟକ ପ୍ରତିଯୋଗିତା ଅନୁଷ୍ଠିତ ହେଲା। ଶ୍ରୀ ଧ୍ରୁବ ଚରଣ ମହାପାତ୍ର 'ଫେରିବାର ସମୟ' ନାଁ ଦେଇ ଗୋଟିଏ ନାଟକ ଲେଖିଆଣି ମୋତେ ଦେଖାଇଲେ। ନାଟକଟି ପଢ଼ିଲି। ଚାରିଗୋଟି ଲୁମ୍ପେନ ଚରିତ୍ରକୁ ନେଇ ନାଟକର ପରିକଳ୍ପନା। ସେମାନଙ୍କର ଭବିଷ୍ୟତକୁ ଅନ୍ଧକାରାଚ୍ଛନ୍ନ କରି ରାଜନେତାମାନେ ନିଜ ନିଜର ଭବିଷ୍ୟତକୁ ସମ୍ଭାବନାମୟ କରିଛନ୍ତି। ଲୁମ୍ପେନ ମାନଙ୍କର ସ୍ୱପ୍ନ ଭାଙ୍ଗିଛି। ଧ୍ରୁବ ବାବୁ ନାଟକଟିକୁ ପ୍ରଚାରମୁଖୀ କରି ଶେଷ କରିଥିଲେ। ମୁଁ ଅନୁଭବ କଲି ନାଟକର ବିଷୟବସ୍ତୁ ଖୁବ୍ ପ୍ରଭାବଶାଳୀ। କିନ୍ତୁ ପ୍ରଚାରମୁଖୀ ପରିଣତି ଏହାକୁ ପ୍ରଭାବହୀନ କରି ଦେବ। ଶେଷ ଦୃଶ୍ୟରେ ଏଇ ଲୁମ୍ପେନ ମାନେ ନିଜେ ନିଜେ ଗୋଟିଏ ବିଷାକ୍ତ ସାପ ହୋଇ ଏଇ କଳଙ୍କିତ ସମାଜକୁ ଦଂଶନ କରିବାକୁ ଉଦ୍ୟତ ହେବା ଆବଶ୍ୟକ ବୋଲି ପରାମର୍ଶ ଦେଲି। ସେହି ଅନୁସାରେ ସେ ଶେଷ ଦୃଶ୍ୟଟି ବଦଳାଇଲେ। ନିଜେ ସଂଳାପ ଯୋଗ କଲେ, ନିର୍ଦ୍ଦେଶନା ଦେଲେ। ନାଟକଟି ଏକକାଳୀନ ଚାରିଗୋଟି ପୁରସ୍କାର ଲାଭ କଲା। ଭାବିଲି ନାଟ୍ୟ ଜଗତ ସହିତ ମୋର ଏତେ ଦିନର ସଂପୃକ୍ତି ବ୍ୟର୍ଥ ଯାଇ ନାହିଁ।

୧୯୮୦ ମସିହାରେ ଗାଁକୁ ଇଲେକ୍ଟ୍ରି ଆସିଲା। ଗୋଟିଏ ବଡ଼ ଅସୁବିଧା ଦୂର ହେଲା କିନ୍ତୁ ସେତେବେଳକୁ ମଂଚରେ ଭଙ୍ଗା ପଡ଼ିବା ଆରମ୍ଭ ହେଲାଣି।

୧୯୬୫ ବେଳକୁ ଓଡ଼ିଶାର ସ୍ଥାୟୀ ମଂଚ ଲୋପ ପାଇ ସାରିଲାଣି। ତାଙ୍କ ପାଇଁ ଯେଉଁମାନେ ନାଟକ ଲେଖୁଥିଲେ ସେମାନେ ହାତ ବନ୍ଦ କରିଦେଲେଣି। ରଂଗମଂଚ ସିନା ନାଟକ ସୃଷ୍ଟିକରେ। ରଂଗମଂଚ ନାହିଁ, ନାଟକ ଆସିବ କୁଆଡୁ ? ଆଉ ଯେଉଁ ନାଟକ ଲେଖାହେଲା ସେ ସବୁ ଗାଁ ଗହଳିର ଦର୍ଶକ ମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ।

ନାଟକ 'ଜଣ' ସାହିତ୍ୟ ନୁହେଁ ଗଣ ସାହିତ୍ୟ। ପାଠୁଆ, ଅପାଠୁଆ ଏକାଠି ବସି ଦେଖିବେ। ତେଣୁ ଧୀରେ ଧୀରେ ନାଟକ ତା'ର ଲୋକପ୍ରିୟତା ହରାଇଲା। ଭୁବନେଶ୍ୱର ବହି ଦୋକାନକୁ ନାଟକ ଖଣ୍ଡିଏ କିଣିବାକୁ ଗଲେ ବହି ଦୋକାନୀ ଏପରି ଆଶ୍ଚର୍ଯ୍ୟ ହୋଇ ଚାହେଁ ମୁଁ ଯେପରି ବହି ଦୋକାନରେ 'ଚରସ' ଖୋଜୁଛି। ବହି ନାହିଁ, ସଂସ୍କୃତି ନାହିଁ ନାଟକ ମଂଚସ୍ଥ ହେବ କଣ ? ପାରମ୍ପରିକ ରୀତିରେ ଆଉ ପ୍ରତିବର୍ଷ ନାଟକ ମଂଚସ୍ଥ କରିବା ସମ୍ଭବ ହେଲା ନାହିଁ। ଏତେବେଳକୁ ୫ମ ପୀଢ଼ିରେ ନେତୃତ୍ୱ ଦେଇଥାନ୍ତି ସଚ୍ଚିଦାନନ୍ଦ (ବାବୁଲି), ପୂର୍ଣ୍ଣ (ସାହାବ)। ସଚ୍ଚିଦାନନ୍ଦ ନିର୍ଦ୍ଦେଶନା ଦିଏ। ମୋତେ କିନ୍ତୁ ସେମାନେ ଛାଡ଼ନ୍ତି ନାହିଁ। ମୁଁ ଗଲେ ରବି ଭାଇ, ବିଜି, ରାମ ଆସନ୍ତି। ଅତୀତ, ବର୍ତ୍ତମାନ ପାଲଟିଯାଏ।

ଗୋଟିଏ ଦୁଇଟି କଥା ମନେ ପଡୁଛି। ସେଥର ଉର୍ଆସୀ କନ୍ୟା ବହିଟି ଅଭିନୀତ ହେବାକୁ ଥାଏ। ମୁଁ ସେଦିନ ସକାଳୁ ଯାଇ ପାରିଲି ନାହିଁ। ପ୍ରାୟ ସଂଧ୍ୟା ବେଳକୁ ଯାଇ ପହଞ୍ଚିଲି। ବିଷ୍ଣୁ ପୁରର ରାମ ବାବୁ (ରାମଚନ୍ଦ୍ର ବେହେରା) ଆମ ଗାଁ ସ୍କୁଲରେ ଶିକ୍ଷକ ଥାନ୍ତି। ସେ ଖୁବ୍ ନାଟ୍ୟ ପ୍ରେମୀ। ତାଙ୍କ ଗାଁରେ ମଝିରେ ମଝିରେ ନାଟକ ମଂଚସ୍ଥ ହୁଏ। ଏ ବିଷୟରେ ତାଙ୍କର ଭଲ ଅଭିଜ୍ଞତା। ମୁଁ ସ୍କୁଲ ଘର ଭିତରକୁ ପଶିଗଲା ବେଳକୁ କିଛି କାଗଜ, ରଂଗ ତୁଳୀ ଧରି ସେ ଏପଟ ସେପଟ ହେଉଛନ୍ତି। ତାଙ୍କୁ ଦେଖି ମୋର ମନେ ହେଲା ସେ କିଛି ଗୋଟାଏ କରିବାକୁ ଚାହୁଁଛନ୍ତି ଅଥଚ କିଛି ଅସୁବିଧା ବି ହେଉଛି। ହୁଏତ ମନ ସ୍ଥିର କରି ପାରୁ ନାହାନ୍ତି। ପଚାରିଲି କ'ଣ ହେବ। ସେ କହିଲେ ପାହାଡ଼ ଆଉ ନଈର ଗୋଟିଏ ଦୃଶ୍ୟ ହେବ। ଏ କାମଟି ମୁଁ କରି ଦେଲି। ଷ୍ଟେଜ୍ ଉପରକୁ ଆସିଲି। କୁମାର ପୂର୍ଣ୍ଣିମା ଉପରେ ଆଧାରିତ ଗୋଟିଏ ସମୂହ ନୃତ୍ୟର ରିହର୍ସଲ ଚାଲିଛି। ଏ ନୃତ୍ୟଟି କିପରି ହେବା ଆବଶ୍ୟକ, ଦୃଶ୍ୟ ସଜ୍ଜା କିପରି ହେବ ତା ମୋର କଳ୍ପନା ରାଜ୍ୟରେ ହଠାତ୍ ଭାସି ଉଠିଲା। ବିଜି, ମୁଁ ଯତିନ୍ ଲାଗି ପଡ଼ିଲୁ। ସାଇକ୍ଲୋମାର ଗୋଟିଏ କୋଣକୁ ଚନ୍ଦ୍ରଟିଏ କଲୁ। ଚନ୍ଦ୍ର ପାଖରୁ ଶିଡ଼ିଟିଏ ତଳକୁ ଲମ୍ବାଇ ଆଣିଲୁ। ପ୍ରତିଟି ପାହାଚ ଉପରେ ଜଣେ ଜଣେ ଝିଅକୁ ନୃତ୍ୟାୟିତ ଭଂଗୀରେ ଠିଆ କରାଇବାକୁ ନୃତ୍ୟ ଶିକ୍ଷକଙ୍କୁ କହିଲି। ହାତରେ ଦୀପ, ଫୁଲମାଳ, ଆଦି ଧରି ସେମାନେ ଠିଆ ହେଲେ।

ତଳେ ସେମାନେ ନାଚ କରିବା ଶିଖିଛନ୍ତି। ଏ ନୃତ୍ୟାୟିତ ଭଂଗୀରୁ ତାଙ୍କୁ ନିଜ ଫର୍ମକୁ ଆସିବାକୁ ହେବ। ତା'ର ବ୍ୟବସ୍ଥା କରିବାକୁ ନାଚ ଶିକ୍ଷକଙ୍କୁ କହିଲି।

ଏ ଦୃଶ୍ୟଟି ନିଜେ ଉପଭୋଗ କରିବାକୁ ପେଣ୍ଡାଲ ଛାଡ଼ି ଆସି ପଛରେ ଠିଆ ହେଲି। ସିନ୍ ଉଠିଲା। ମନକୁ ଛୁଇଁବା ଭଳି ଦୃଶ୍ୟଟିଏ ହୋଇଥିଲା।

ଉଆଁସୀ କନ୍ୟା ନାଟକଟିକୁ ଲେଖିଥିଲେ ଶ୍ରୀ ସୀମାଚଳ ଦାସ (୧୯୬୮)। ଉଆଁସୀ କନ୍ୟା ବୋଲି ଅବା ଦୁର୍ଭାଗ୍ୟ ମଂଚୁର ପଛେ ପଛେ ଧାଇଁଥିଲା। ବେଦୀ ଉପରୁ ବର ବାହୁଡ଼ିଲା, ଅନହୂତି ଯେ ଆସି ତାକୁ ପତ୍ନୀର ଆସନ ଦେଲା, ସେ ପୁଣି ତା'ର ଚରିତ୍ରରେ କଳଙ୍କ ବୋଲି ଘର ଛାଡ଼ି ଚାଲିଗଲା।

ମଂକୁ ଯେଉଁଦିନ ନିହାରର ହାତ ଧରି ଶାଶୁ ଘରେ ପାଦ ଦେଲା, ସେ ଜାଣି ନଥିଲା ଯେ ଭାଗ୍ୟର କ୍ରୂର ପରିହାସରେ ତା'ର ଆଦ୍ୟ ଯୌବନର ପ୍ରେମିକ ରଜତ-ନିହାରର ସାନ ଭାଇ। ନିଖୋଜ ସୈନିକ ତାଲିକାରେ ସିନା ରଜତର ନାଁ ଥିଲା କିନ୍ତୁ ସେ ବଂଚିଛି ବୋଲି କାହାର ବିଶ୍ୱାସ ନ ଥିଲା। ନିହାର ଅବଶ୍ୟ ତା'ର ବାଟ ଚାହିଁ ବସିଥିଲା। ବାପ ମା ଛେଉଣ୍ଡ ରଜତକୁ ସେ ପୁଅଭଳି ପାଳିଥିଲା। ତା'ର ବିଶ୍ୱାସ ଥିଲା ରଜତ ଫେରିବ। ସତେ ଯେପରି ତା'ର ବିଶ୍ୱାସ ରଜତକୁ ବାଟ କଢ଼େଇ ଆଣିଲା।

ମଂକୁକୁ ଏପରି ଭାବେ ଦେଖିବ ବୋଲି ରଜତ କେବେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନଥିଲା। କିନ୍ତୁ ଅତୀତକୁ ଭୁଲି ଉପସ୍ଥିତ ପରିସ୍ଥିତିକୁ ସହଜରେ ଗ୍ରହଣ କରି ନେଇଥିଲେ ରଜତ ଆଉ ମଂକୁ, ଦିଅର ଭାଉଜର ପବିତ୍ର ସଂପର୍କକୁ ପାଥେୟ କରି। ସେମାନଙ୍କ ଅତୀତକୁ ସାତ ତାଳ ପଙ୍କରୁ ଉଖାରି ଯେତେବେଳେ ଖଳନାୟକ ଧରଣୀ, ନିହାର ଆଗରେ ଉପସ୍ଥାପିତ କଲା ସେତେବେଳେ ରାଗ ଅଭିମାନରେ ଘର ଛାଡ଼ି ଚାଲିଗଲା ନିହାର।

ରଜତ ଆଉ ମଂକୁକୁ କେନ୍ଦ୍ର କରି ଝଡ଼ଟିଏ ଯେତେବେଳେ ବହିଗଲା ରଜତ ସହିତ ଗୋଟିଏ ଘରେ ରହିବାକୁ ଆଉ ଉଚିତ ମନେ କଲା ନାହିଁ ମଂକୁ। ସେ ମଧ୍ୟ ଘରଛାଡ଼ି ଆସି ବାପଘରେ ରହିଲା।

ଅଭିଆଡ଼ି ମଂକୁକୁ ପ୍ରେମ ନିବେଦନ କରି ସେଦିନ ଯେଉଁ ଶକ୍ତ ଚାପଡ଼ା ଖାଇଥିଲା ଧରଣୀ ତା'ର ପ୍ରତିଶୋଧ ଏବେ ନେଉଥିଲା ସେ। ନିହାରର ସଂସାରରେ ନିଆଁ ଜାଳି ସେ ସନ୍ତୁଷ୍ଟ ନଥିଲା। ସେ ଚାହୁଁଥିଲା ମଂକୁର ଭୁକ୍ତାବଶେଷ ଶରୀର। ସେଥିପାଇଁ ବ୍ୟାଧ ଭଳି ଚାରିଆଡ଼େ ଜାଲ ବିଛାଇ ଦେଇଥିଲା ସେ। ନିଜ ଅଜାଣତରେ ସେଇ ଜାଲରେ ଧରା ଦେଇଥିଲା ନିହାର। ଜଣେ ଗଣିକା ମାଧ୍ୟମରେ ଘରଛଡ଼ା ନିହାର ପାଇଁ ପର୍ଯ୍ୟାପ୍ତ ସୁରା ଆଉ ସାକୀର ବ୍ୟବସ୍ଥା କରିଥିଲା ଧରଣୀ। ଶେଷରେ ମଦଗ୍ଲାସ୍‌ରେ ବିଷ ମିଶାଇ ନିହାରକୁ ଦେବାକୁ ଜଣେ ଗଣିକାକୁ ନିର୍ଦ୍ଦେଶ ଦେଲା ଧରଣୀ। ପୁଣି ଧମକ ଦେଲା- ଯଦି ନିହାରକୁ ସେ ବିଷ ନଦିଏ ତେବେ ନିଜ ଜୀବନର ଆଶା ତାକୁ ଛାଡ଼ିବାକୁ ପଡ଼ିବ।

ଗୋଟିଏ ପାଖରେ ବିବେକର ଆହ୍ୱାନ-ଅନ୍ୟ ପଟେ ନିଜ ଜୀବନ ପ୍ରତି ମୋହ। ନିଜେ ବଂଚିବାର ଆଶା ପ୍ରବଳ ହୋଇ ଉଠିଛି ଗଣିକା ମନରେ। ବିଷ ଗ୍ଲାସ୍‌ଟିକୁ ଉଠାଇ

ନେବାକୁ ଆଗେଇ ଆସିଛି କିନ୍ତୁ ଅନଦ୍ଭୂତି ଆବିର୍ଭୂତ ହୋଇଛି ରକତ। ଏଥର ବୋଧହୁଏ ବିବେକର ଆହ୍ୱାନ ଶୁଣିପାରୁଥିଲା ବେଶ୍ୟାଟି କିନ୍ତୁ ଧରଣୀର ଅପ୍ରତ୍ୟାଶିତ ଗୁଳିଚୋଟରେ ଟଳି ପଡ଼ିଛି ବିଚାରୀ। ଝଡ଼ ବେଗରେ ବାହାରକୁ ଚାଲିଯାଇଛି ଧରଣୀ।

ଏହାର କେଇଟି ଦିନ ପରେ ଗୋଟିଏ ଗଭୀର ରାତିରେ ମଂକୁକୁ ଅପହରଣ କରି ନେଇ ଆସିଛି ଧରଣୀ କିନ୍ତୁ ରକତ ସେଠାରେ ପହଞ୍ଚି ଧରଣୀର ପ୍ରତିରୋଧ କରିଛି। ନିରସ୍ତ୍ର ରକତ ଯେତେବେଳେ ଧରଣୀର ରିଭଲଭର ଆଗରେ ମୃତ୍ୟୁକୁ ଅପେକ୍ଷା କରିଛି ମଂକୁର ଭାଇ ନୀଳମଣି ହଠାତ୍ ପଛରୁ ଆଘାତ କରିଛି ଧରଣୀକୁ। ସେ ଆଘାତ ପାଇଁ ପ୍ରସ୍ତୁତ ନଥିଲା ଧରଣୀ। ତା ହାତରୁ ରିଭଲଭରଟି ଛିଟିକି ତଳେ ପଡ଼ିଛି। ସେଇ ସୁଯୋଗରେ ରିଭଲଭରକୁ ଗୋଟାଇ ନେଇ ଧରଣୀକୁ କାବୁ କରିଛି ରକତ।

ତା ସଂସାରରେ କିଏ ନିଆଁ କାଳିଛି ତା ବୁଝିବାକୁ ଆଉ ନିହାରର ବାକି ନାହିଁ। ସନ୍ଦେହ ଅପସରି ଯାଇଛି। ସ୍ୱାମୀ ସ୍ତ୍ରୀର ମିଳନରେ ନାଟକ ଶେଷ ହୋଇଛି।

ମଂଚ ନାଟକ ବଂଚିବା ପାଇଁ କଠୋର ସଂଗ୍ରାମ କରୁଥିଲେ ମଧ୍ୟ ହିନ୍ଦି ଚଳଚ୍ଚିତ୍ର ପ୍ରଭାବରୁ ମୁକ୍ତ ରହିଥିଲା ଶେଷ ପର୍ଯ୍ୟନ୍ତ। ଏ ନାଟକଟି କିନ୍ତୁ ଚଳଚ୍ଚିତ୍ର ପ୍ରଭାବରେ ବିକଳାଙ୍ଗ ହୋଇ ପଡ଼ିଥିଲା।

ଲିଭି ଲିଭି ଆସୁଥିବା ଦୀପ ଶିଖାଟି ସେ ବର୍ଷ ହଠାତ୍ ଜଳି ଉଠିଲା। ୧୯୯୮ ମସିହା। ଆମ ଗାଁ ପିଲାମାନେ ସ୍ଥିର କଲେ ଦୁଇଟି ନାଟକ ମଂଚସ୍ଥ କରିବେ। ଗୋଟିଏ ନାଟକର ନାଁ ମନେ ନାହିଁ। ଅନ୍ୟଟି ସଂଧ୍ୟାତାରା। ବେକ ଭାଙ୍ଗି ପଡ଼ିଥିବା କଳଘୋଡ଼ାଟି ଡେଇଁ ଉଠି ନାଚିବାକୁ ଆରମ୍ଭ କଲା ପରା।

ସଂଧ୍ୟାତାରା ନାଟକଟି ଲେଖିଥିଲେ ଚିନ୍ତାମଣି ଜେନା। ପ୍ରବଞ୍ଚନାର ବିଷ ବୃତ୍ତ ଭିତରେ ଅତିଷ୍ଠ ଜଣେ ଆଦିବାସୀ ଶ୍ରମିକ କନ୍ୟାର ଆତ୍ମତ୍ୟାଗର କାହାଣୀ ରୂପାୟିତ ହୋଇଥିଲା ନାଟକରେ। କିନ୍ତୁ ନାଟକରେ ପ୍ରାଣପ୍ରାଚୁର୍ଯ୍ୟ ନଥିଲା। ମୋର ମନେ ହେଉଥିଲା ମୁଁ ଯେପରି ନାଟ୍ୟ ସୌକର୍ଯ୍ୟର ଅବଶେଷ ଉପରେ ଠିଆ ହୋଇ ନାଟକର ଆତ୍ମାକୁ ଖୋଜି ବୁଲୁଛି।

ନାଟକଟି ମଂଚସ୍ଥ ହେଲା ଦୀର୍ଘ ଦିନର ବ୍ୟବଧାନ ପରେ। ପ୍ରତିଟି ଅଭିନେତାଙ୍କ ଅଭିନୟରେ ମୁଦ୍ରିତ ହୋଇଥିଲା କାକ୍ୱଲ୍ୟମାନ ଦୀର୍ଘ ଐତିହ୍ୟ।

ଟିକିଏ ନିର୍ମଳ ଆନନ୍ଦ ପାଇଁ-ଗୋଟିଏ ସଂସ୍କୃତିର ଧାରାକୁ ଜୀବନ୍ତ ରଖିବାକୁ ପୁରୁଷ ପୁରୁଷ ଧରି ଏପରି ବିପୁଳ ସମ୍ମିଳିତ ଉଦ୍ୟମ, ଏତେ ନିଷ୍ଠା, ଏତେ ଆନ୍ତରିକତା ଇତିହାସ ଆଉ କୋଉଠି ଲିପିବଦ୍ଧ କରିଛି କି ନାହିଁ ମୋତେ ଜଣା ନାହିଁ।

ତନୁମନକୁ ରୋମାଞ୍ଚିତ କରି ସେଇ ମଞ୍ଚରେ ସୂର୍ଯ୍ୟନାରାୟଣ, ଶୁଭେନ୍ଦୁ କଣ୍ଠରୁ ଝରି ପଡ଼ିଲା ଗତାୟୁ ଅତୀତର ପୂରବୀ।

ଅତୀତ ଏଇଠି କୋଉଠି ଉଇଙ୍ଗସ୍ ଦାଡ଼ରେ ଲୁଚିଥିଲା ପରା ! ପ୍ରମତ୍ତ ଆବେଗର୍‌ରେ ଲେଉଟି ଆସିଛି।

ନାଟକ ଶେଷ ହେଲା।

ପାଦ ପ୍ରଦୀପ ନିଷ୍ପ୍ରଭ ହେଲା।

ନୀଡ଼ ବାହୁଡ଼ା ପକ୍ଷୀ ଶ୍ରେଣୀ ପରି ସହକାର ବୀଥିକୁ କାକଳିତ କରି ଦର୍ଶକମାନେ ମିଶିଗଲେ ରାତ୍ରିର ଘନ ଅନ୍ଧକାର ଭିତରେ।

ସେଇଦିନୁ ଏ ମଂଚରେ ଆଉ ପାଦ ପ୍ରଦୀପ ଜଳି ନାହିଁ। କରମ୍ବିତ କଳରୋଳ ଆଉ ପ୍ରତିଧ୍ୱନି ତୋଳି ନାହିଁ। ଭୈରବୀର ତାଳେ ତାଳେ ଶ୍ରୋଣୀଲଗ୍ନ କିଙ୍କିଣୀ ଆଉ ଶବ୍ଦାୟିତ ହୋଇ ନାହିଁ।

ଗହଳ ଆମ୍ବତୋଟାର ଘନଛାୟା ତଳେ କ୍ଳାନ୍ତ ଆଖିପତା ମୁଦି ରଂଗ ମଂଚଟି ଶୋଇ ପଡ଼ିଛି। ଅଲୋଡ଼ା ଇତିହାସର ସାକ୍ଷୀ ସେ। ଶୋଇଛି ଯଦି ଶୋଇ ଥାଉ।

— ସମାପ୍ତ —

ଗ୍ରନ୍ଥ ଆରମ୍ଭ
ବାହୁଡ଼ା ଦ୍ୱାଦଶୀ
୨୧ । ୭ । ୨୦୦୨

ଗ୍ରନ୍ଥ ଶେଷ
ଦୀପାବଳୀ
୫ । ୧୧ । ୨୦୦୨

## ଆମର ଗୌରବ-ଆମର କଳାକାର

**ସର୍ବଶ୍ରୀ**
ଅଗାଧୁ ବେହେରା
ଅଜୟ୍ କୁମାର ନାୟକ
ଅଜୟ୍ କୁମାର ବେହେରା
ଅଜୟ୍ କୁମାର ମହାନ୍ତି
ଅନନ୍ତ ଚରଣ ନାୟକ
ଅବଳା ରଂଜନ (ମକୁନ୍ଦଦାସ ପୁର)
✓ ଅମର ସିଂ ପଟ୍ଟନାୟକ
ଅମିତ୍ କୁମାର ନାୟକ
ଅକ୍ଷୟ୍ କୁମାର ନାୟକ (ତଳ ସାହି)
ଅକ୍ଷୟ୍ କୁମାର ନାୟକ (ଉପର ସାହି)
✓ ଆଦିକନ୍ଦ ନାୟକ
✓ ଇଶ୍ୱର ଚନ୍ଦ୍ର ନାୟକ
ଉଦୟ୍ ନାଥ ପ୍ରଧାନ (ମାଟିଆ ପଡ଼ା)
ଉଦୟ୍ ନାଥ ମୁଦୁଲି (କୁଂଜର)
ଉପେନ୍ଦ୍ର ନାୟକ
ଉମେଶ ଚନ୍ଦ୍ର ନାୟକ (କ) (ପାକୁ)
ଉମେଶ ଚନ୍ଦ୍ର ନାୟକ (ଖ) (ବାବୁନି)
ଉଷାରାଣୀ ନାୟକ
କାଶୀନାଥ ନାୟକ (କାଶୀ ଭାଇ)
କିଶୋର ଚନ୍ଦ୍ର ନାୟକ
କେଦାର ନାଥ ନାୟକ
କୈଳାସ ଚନ୍ଦ୍ର ନାୟକ
✓ କୃଷ୍ଣଚନ୍ଦ୍ର ନାୟକ (ଉପର ସାହି)
କୃଷ୍ଣଚନ୍ଦ୍ର ପଣ୍ଡା (ସଂଗଳାଇ)
ଗିରୀଧାରୀ ନାୟକ
ଗିରୀଶ ଚନ୍ଦ୍ର ମହାନ୍ତି
ଗୋପାଳ ଚନ୍ଦ୍ର ନାୟକ (ଗୋପାଳ ମାମୁଁ)
ଚରଣ ସାହୁ (ସିଉଳା)
ଚନ୍ଦ୍ରକାନ୍ତ ନାୟକ
ଚାରୁବାଳା ମହାନ୍ତି
ଚିତ୍ତରଂଜନ ନାୟକ
ଜୟକୃଷ୍ଣ ନାୟକ (ଜୟି ଭାଇ)
ଜାନକୀ (ସରକଣା)
ଜ୍ୟୋତିଲକ୍ଷ୍ମୀ ନାୟକ
ଜ୍ଞାନେନ୍ଦ୍ର ଦାସ
ତିଳ ମୁଦୁଲି (କୁଂଜର)
ତ୍ରିଲୋଚନ ନାୟକ
ଦିଲ୍ଲୀପ କୁମାର ନାୟକ
ଦିଲ୍ଲୀପ କୁମାର ପଟ୍ଟନାୟକ
✓ ଦେବେନ୍ଦ୍ର ନାୟକ
ଧୀରେନ୍ଦ୍ର ନାଥ ନାୟକ
ନରେନ୍ଦ୍ର ନାଥ ନାୟକ
✓ ନରେନ୍ଦ୍ର ପଟ୍ଟନାୟକ
ନିରଞ୍ଜନ ନାୟକ
✓ ନୃସିଂହ ଚରଣ ନାୟକ (ଉପର ସାହି)
ନୃସିଂହ ଚରଣ ନାୟକ (ତଳ ସାହି)
ପଦ୍ମ ଚରଣ ନାୟକ
ପପୁ
✓ ପୂର୍ଣ୍ଣ ଚନ୍ଦ୍ର ନାୟକ
ପୂର୍ଣ୍ଣ ଚନ୍ଦ୍ର ନାୟକ (ସାହାବ)
ପୂର୍ଣ୍ଣ ଚନ୍ଦ୍ର ପଣ୍ଡା

ପ୍ରକାଶ ଚନ୍ଦ୍ର ନାୟକ
ପ୍ରଦୀପ୍ତ କୁମାର ନାୟକ
ପ୍ରଫୁଲ୍ଲ କୁମାର ମହାନ୍ତି
✓ ପ୍ରମିଳା କୁମାରୀ ନାୟକ
ପ୍ରମୋଦ କୁମାର ନାୟକ (ରାଧା)
ପ୍ରଶାନ୍ତ କୁମାର ନାୟକ
ପ୍ରସନ୍ନ କୁମାର ନାୟକ (ବୁଲୁ)
✓ ପ୍ରାଣକୃଷ୍ଣ ନାୟକ (କ) (ପାଣୁଦାଦି)
✓ ପ୍ରାଣକୃଷ୍ଣ ନାୟକ (ଖ)
ପ୍ରାଣକୃଷ୍ଣ ମହାନ୍ତି (ପ୍ରାଣଭାଇ)
ପ୍ରେମାନନ୍ଦ ନାୟକ (କ)
ପ୍ରେମାନନ୍ଦ ନାୟକ (ଖ)
ବନମାଳୀ ମହାନ୍ତି
ଇଂ ବନବିହାରୀ ନାୟକ (ବଡ଼ପଡ଼ା)
ବସନ୍ତ କୁମାରୀ ନାୟକ
✓ ବିଚିତ୍ରାନନ୍ଦ ନାୟକ
ବିଜୟ କୁମାର ନାୟକ (ବିଜି)
ବିଜୟ କୁମାର ମହାନ୍ତି
ବିଭୂତି ଭୂଷଣ ନାୟକ
ବିଶ୍ୱଜିତ୍ ପଟ୍ଟନାୟକ
✓ ବିଶ୍ୱନାଥ ନାୟକ (ବିଶି ଭାଇ)
✓ ବିଶ୍ୱନାଥ ନାୟକ (ବିଶି ଦାଦି)
✓ ବିଶ୍ୱନାଥ ସାହୁ
ବୀରେନ୍ କୁମାର ନାୟକ
ବୁଲେଇ ମୁଦୁଲି (କୁଂଜର)
ବେଣୁଧର ନାୟକ
ବେଣୁଧର ମହାନ୍ତି
✓ ବୈଷ୍ଣବ ବାରିକ

ବଂଶୀଧର ଜେନା (ମାଟିଆପଡ଼ା)
ବଂଶୀଧର ପ୍ରଧାନ (ମାଟିଆପଡ଼ା)
✓ ଭଗବାନ ନାୟକ (ଭଗିଭାଇ)
✓ ଭ୍ରମରବର ମହାନ୍ତି (ଭ୍ରମର ଭାଇ)
ମନମୋହନ ମହାନ୍ତି
✓ ମହେଶ୍ୱର ନାୟକ (ଖ) (ସାନ ମହିଭାଇ)
ମଙ୍ଗୁଳି ପ୍ରଧାନ (ମାଟିଆପଡ଼ା)
ମାନସ ରଂଜନ ନାୟକ
ମାନସ ରଂଜନ ମହାନ୍ତି
ଯତୀନ୍ଦ୍ର ନାଥ ନାୟକ
ଯତୀନ୍ଦ୍ର ନାଥ ମହାନ୍ତି
✓ ଯଦୁମଣି ନାୟକ (ଯଦୁଦାଦି)
ଯଦୁମଣି ମହାନ୍ତି (ଯଦୁଭାଇ)
✓ ରଜନୀ ଭୂଷଣ ନାୟକ
ରତିକାନ୍ତ ନାୟକ
ରବୀନ୍ଦ୍ରନାଥ ନାୟକ (ରବି ଭାଇ)
ରାଜକିଶୋର ନାୟକ (ରାଜ ଭାଇ)
ରାଧାନାଥ ନାୟକ (ରାଧାନାଥ ଭାଇ)
ରାମଚନ୍ଦ୍ର ନାୟକ
ଲକ୍ଷ୍ମୀଧର ମହାନ୍ତି (ସରକଣା)
ଲିଙ୍ଗରାଜ ଗୁରୁ (କୁଞ୍ଜର)
ଲିଟିଲି
ଲୋକନାଥ ନାୟକ (ଲୋକି ଭାଇ)
ଲୋକନାଥ ନାୟକ (କାଳିଆ)
ଶକ୍ତିପ୍ରସନ୍ନ ମହାନ୍ତି
ସଚ୍ଚିଦାନନ୍ଦ ନାୟକ (ବାବୁଲି)
ସତ୍ୟବାଦୀ ପ୍ରଧାନ (ନହଳା)

ସାନନ୍ଦ ଖୁଣ୍ଟିଆ
ସୁଦର୍ଶନ ନାୟକ (ସୁଦି ଭାଇ)
ସୁଦର୍ଶନ ପ୍ରଧାନ (କୁଞ୍ଜର)
ସୁବାସ କୁମାର ନାୟକ
ଡା. ସୁରେନ୍ଦ୍ର ନାଥ ନାୟକ
ସୂର୍ଯ୍ୟ ନାରାୟଣ ନାୟକ
ସୋମନାଥ ନାୟକ
ସୌମ୍ୟ ରଂଜନ ପଟ୍ଟନାୟକ
ସଂଜୟ କୁମାର ନାୟକ
ହାଡ଼ିବଂଧୁ ପ୍ରଧାନ (ମାଟିଆପଡ଼ା)

**ପ୍ରଚ୍ଛଦପଟ କଳାକାର**
ଅଲେଖ ବିଶୋଇ (ସିଉଳା)
✓ ଉଦୟନାଥ ନାୟକ (ଉଦୟନାଥ ଦାଦି)
✓ ଉଦୟନାଥ ମହାନ୍ତି
କଲ୍ପନା ନାୟକ
✓ ଗଜେନ୍ଦ୍ରନାଥ ନାୟକ (ଗଜି ଭାଇ)
ଗୀତାଞ୍ଜଳୀ ନାୟକ
ଚନ୍ଦନା ନାୟକ
ଜତୀନ୍ଦ୍ରନାଥ ମହାନ୍ତି (ବାଳକାଟି)

ନାଦ ଭୋଇ (କୁଂଜର)
ପୁଷ୍ପଲତା ନାୟକ
ପ୍ରଫୁଲ୍ଲ ଚନ୍ଦ୍ର ପଣ୍ଡା (ସଂଗଲାଇ)
ଫକୀର ମୁଦୁଲି (କୁଂଜର)
ବିଶ୍ୱନାଥ ଭୋଇ (କୁଂଜର)
✓ ଭଗବାନ ମହାନ୍ତି (ସାନ ଭଗିଭାଇ)
ଭାସ୍କର ଚନ୍ଦ୍ର ଦିକ୍ଷିତ (ପିପିଲି)
ଭୁବନେଶ୍ୱର ମିଶ୍ର (ଭୁବନେଶ୍ୱର)
ମନୋଜ ପଟ୍ଟନାୟକ (ସାଗୁଆ)
ରବୀନ୍ଦ୍ର କୁମାର ମହାନ୍ତି (ଦଳଭାଣପୁର)
ରାଜୀବ ବେହେରା (କୁଂଜର)
✓ ଲକ୍ଷ୍ମୀଧର ନାୟକ (ହରିଦାସପୁର)
ଲୋକନାଥ ପରିଡ଼ା
ଶୁକଦେବ ରାଉତରାୟ (ଭୁବନେଶ୍ୱର)
ଶୁଭେନ୍ଦ୍ର ନାୟକ
ସତ୍ୟବାଦୀ ମିଶ୍ର (ବେତାର)
✓ ସରସ୍ୱତୀ ନାୟକ
✓ ସୁଦର୍ଶନ ମହାନ୍ତି (ସାନ ସୁଦିଭାଇ)
ସୁରେନ୍ଦ୍ର ନାଥ ନାୟକ (ସିଉଳା)
ସ୍ୱର୍ଣ୍ଣଲତା ନାୟକ
ସ୍ନେହାଞ୍ଜଳୀ ନାୟକ
ହାଲୁ ବାରିକ (ସିଉଳା)

# ଇଉନିୟନ୍ ପ୍ରେସିଡେଣ୍ଟ ନିଯୁକ୍ତି ପତ୍ର ନମୁନା

GOVERNMENT OF ORISSA.
HOME (POLICE) DEPARTMENT.

-----

Notification.

The 12th February,1940

No. 291 P. In exercise of the powers conferred by sub-sections (1) and (2) of Section 14 of the Code of Criminal Procedure 1898 (Act V of 1898), the Governor of Orissa is pleased --

(a) to confer upon Sri Udyanath Naik, who has been appointed to be the President of the Panchayats of Union No.X in the Police Station Pipli of the Sadr Subdivision in the district of Puri in place of Sri Chintamani Satpathy (who was appointed for a period of 3 years under Notification No.4305 P, dated 10.5.38), the powers of a Magistrate under Sections 64, 127 and 128 of the said Code within the limits of the said Union; and

(b) to declare that he may exercise the said powers during the unexpired portion of the period of 3 years ending on the 12th March, 1941 upto which date Sri Chintamani Satpathy had been empowered to hold the office of President of the said Panchayat.

By order of the Governor,
Sd. P.T.Mansfield,
Chief Secretary to Government.

-----

Memo No. 1991
PURI DISTRICT OFFICE.
Dated Puri, the 20th February, 1940.

Copy forwarded to Sri Udyanath Naik, President, Union No.X, Pipli P.S. for information.

for District Magistrate.

BS. 20/2.